

# ବି.ଟି. ରଣଦିଭେ
# ଜୀବନ ଓ ଶିକ୍ଷା

• ଏମ୍.କେ. ପାଣ୍ଡେ

# ବି.ଟି. ରଣଦିଭେ
# ଜୀବନ ଓ ଶିକ୍ଷା

● ଏମ୍.କେ. ପାଣ୍ଡେ

ଶ୍ରମିକ ଶ୍ରେଣୀର ମତାଦର୍ଶଗତ ସଂଗ୍ରାମର ମହାନ୍ ଯୋଦ୍ଧା କମ୍ରେଡ଼ ବି.ଟି. ରଣଦିଭେଙ୍କ ଜନ୍ମ ଶତବାର୍ଷିକୀ ୨୦୦୩ ଡିସେମ୍ବର ୧୯ ଦିନାଙ୍କ ଠାରୁ ବର୍ଷସାରା ଶ୍ରମିକମାନଙ୍କ ମଧ୍ୟରେ ଶିକ୍ଷା ଓ ସଂଗଠନ ପ୍ରସାର ପାଇଁ ଅଭିଯାନ ଆରମ୍ଭ କରାଯାଇଛି । ଶ୍ରମିକ ଶ୍ରେଣୀ ଆନ୍ଦୋଳନର ଆଦର୍ଶଗତ ଭିତ୍ତି ଓ ଟ୍ରେଡ଼ ୟୁନିୟନ ଆନ୍ଦୋଳନର ଇତିହାସ, ଭାରତବର୍ଷରେ ଟ୍ରେଡ଼ ୟୁନିୟନ ମାନଙ୍କର ମହାସମନ୍ୱୟ ସମିତି ଗଠନ, ବିଶ୍ୱରେ ଶାନ୍ତି ଓ ସମାଜବାଦ ପ୍ରତିଷ୍ଠା ପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ଶକ୍ତିଶାଳୀ ଆନ୍ଦୋଳନ ଗଢ଼ି ତୋଳିବା ବିଷୟ ଗୁଡ଼ିକ ଶିକ୍ଷା ପ୍ରଦାନ କାର୍ଯ୍ୟକ୍ରମର ମୁଖ୍ୟ ବିଷୟ ଅଟେ । ଏଥି ସାଙ୍ଗେ ସାଙ୍ଗେ ସଂଗଠନକୁ ଶକ୍ତିଶାଳୀ କରିବା ଓ ସି.ଆଇ.ଟି.ୟୁ ସଭ୍ୟ ସଂଖ୍ୟା ଚାଳିଶ ଲକ୍ଷରେ ପହଞ୍ଚାଇବା ଲକ୍ଷ୍ୟ ମଧ୍ୟ ଧାର୍ଯ୍ୟ କରାଯାଇଛି ।

ଏହି ସଂକ୍ଷିପ୍ତ ରଚନାରେ କମ୍ରେଡ଼ ବି.ଟି. ରଣଦିଭେଙ୍କ ଜୀବନୀ ଓ ଭାରତବର୍ଷର ଶ୍ରମିକ ଶ୍ରେଣୀ ପାଇଁ ତାଙ୍କର ଶିକ୍ଷା ବିଷୟ ଆଲୋଚନା କରାଯାଇଛି । କମ୍ରେଡ଼ ରଣଦିଭେ ତାଙ୍କର ସମଗ୍ର ଜୀବନକାଳ ଶ୍ରମିକ ଶ୍ରେଣୀ ଓ ଭାରତବର୍ଷର ଅନ୍ୟାନ୍ୟ ଶ୍ରମଜୀବୀ ମଣିଷମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଅବିରତ ସଂଗ୍ରାମ ଚଳେଇ ଥିଲେ । ମୃତ୍ୟୁପରେ ମଧ୍ୟ ବି.ଟି. ରଣଦିଭେଙ୍କ ପରମ୍ପରା ନୂତନ ପିଢ଼ିକୁ ତାଙ୍କ ଅସମାପ୍ତ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ପ୍ରେରଣା ଯୋଗାଉଛି ।

କମ୍ରେଡ଼ ରଣଦିଭେ ଜଣେ ନିଷ୍ପାପର ଓ ସଚ୍ଚୋଟ ବିପ୍ଳବୀ ଥିଲେ । ପୁଞ୍ଜିବାଦୀ ବ୍ୟବସ୍ଥାର ବିଲୋପ ଓ ସମାଜବାଦ ପ୍ରତିଷ୍ଠା ଲକ୍ଷ୍ୟରେ କାମ କରିଥିଲେ । ଶ୍ରମିକ ଶ୍ରେଣୀ ଓ ମେହନତୀ ମଣିଷମାନଙ୍କ ଦୈନନ୍ଦିନ ସଂଗ୍ରାମକୁ ସାମାଜିକ ପରିବର୍ତ୍ତନର ଚରମ ଲକ୍ଷ ସହ ଯୋଡ଼ିବା ଥିଲା ଭାରତବର୍ଷର ଶ୍ରମିକ-ଆନ୍ଦୋଳନକୁ କମ୍ରେଡ଼ ବି.ଟି. ରଣଦିଭେଙ୍କ ସର୍ବୋତ୍କୃଷ୍ଟ ଅବଦାନ ।

କୌଣସି ପ୍ରକାର ସାମାଜିକ ପରିବର୍ତ୍ତନ ବିପ୍ଳବୀ ସିଦ୍ଧାନ୍ତ ଓ ଶ୍ରମିକ ଶ୍ରେଣୀର ବିପ୍ଳବୀ ଦଳ ବିନା ସମ୍ଭବପର ହେବ ନାହିଁ - ରଣଦିଭେ ସର୍ବଦା ଏହା ଉପରେ ଜୋର ଦେଉଥିଲେ । ସେଥିପାଇଁ ସେ ଟ୍ରେଡ଼ ୟୁନିୟନମାନଙ୍କର ସ୍ୱାଧୀନ ଗଣସଂଗଠକ ଭାବେ ଅଭିବୃଦ୍ଧି ସାଙ୍ଗକୁ ଅଧିକରୁ ଅଧିକ ରାଜନୈତିକ ପଦକ୍ଷେପ ଏବଂ ଶ୍ରମିକ ଶ୍ରେଣୀ ମଧ୍ୟରେ ପାର୍ଟି ସଂଗଠନର ବିସ୍ତାର ଉପରେ ଜୋର ଦେଉଥିଲେ ।

ସି.ଆଇ.ଟି.ୟୁ ପ୍ରତିଷ୍ଠା ସମ୍ମିଳନୀରେ ସେ ତାଙ୍କ ପରିସମାପ୍ତି ଉଦ୍‌ବୋଧନରେ ନିର୍ଦ୍ଦିଷ୍ଟଭାବେ ଘୋଷଣା କରିଥିଲେ : "ଟ୍ରେଡ଼ ୟୁନିୟନ ଆନ୍ଦୋଳନ କେବେହେଲେ ଏକଥା ଭୁଲି ପାରିବ ନାହିଁ

ଯେ ସମାଜବାଦ ପ୍ରତିଷ୍ଠା ଓ ଶୋଷଣରୁ ମୁକ୍ତି ଆପ୍ତବାକ୍ୟ ହୋଇ ରହିଯିବ ଯଦି ଶ୍ରମିକ ଶ୍ରେଣୀ ସଚେତନଭାବେ କ୍ଷମତା ଦଖଲ ପାଇଁ ଲଢ଼ିବ ନାହିଁ; ଏବଂ ଏ ଦିଗରେ ପ୍ରଥମ କାମ ହେଉଛି ଆଜିର ପୁଞ୍ଜିପତି ଜମିଦାର ସରକାରକୁ ତଡ଼ି ଦେଇ ଏକ ପ୍ରକୃତ ଜନସାଧାରଣଙ୍କ ସରକାରକୁ କ୍ଷମତାରେ ପ୍ରତିଷ୍ଠିତ କରିବା ।"

ଯାବତୀୟ ସଂଶୋଧନବାଦୀ ଓ ହଟ୍ଟକାରୀ ମତାଦର୍ଶ ବିରୁଦ୍ଧରେ ଶ୍ରମିକ ଶ୍ରେଣୀ ସଂଗ୍ରାମ ନକଲେ ସମାଜବାଦ ପ୍ରତିଷ୍ଠା ସଂଗ୍ରାମ କଦାଚିତ୍ ଆଗେଇ ପାରିବ ନାହିଁ – ଏଥିରେ ବି.ଟି. ରଣଦିଭେ ଦୃଢ଼ ବିଶ୍ୱାସ କରୁଥିଲେ । ସେ ସଦାବେଳେ ଜୋର ଦେଇ କହୁଥିଲେ ଯେ ବିପ୍ଳବୀ ଆନ୍ଦୋଳନ ପାଇଁ ଏ ଦୁଇ ପ୍ରକାର. ବିଚ୍ୟୁତି ଶୋଷଣକାରୀ ଶାସନକୁ ସମପରିମାଣରେ ସାହାଯ୍ୟ କରିଥାଏ ।

ସଂଶୋଧନବାଦୀମାନେ ଶ୍ରମିକ ଶ୍ରେଣୀକୁ ରାଜନୈତିକ କାର୍ଯ୍ୟକଳାପ ଠାରୁ ଦୂରେଇ ରଖିଥାନ୍ତି । ଏହା ବିରୁଦ୍ଧରେ ସଦା ସର୍ବଦା ବି.ଟି. ରଣଦିଭେ ସଂଗ୍ରାମ କରିଥିଲେ । ବ୍ୟକ୍ତିଗତ ଜୀବନରେ ଆଦ୍ୟ ଯୁବାବସ୍ଥାରୁ ସେ ଯେତେବେଳେ ଟ୍ରେଡ୍ ୟୁନିୟନ ଆନ୍ଦୋଳନରେ ନିଜକୁ ସାମିଲ କଲେ, ସେତେବେଳେ ସେ ରାଜନୈତିକ କାର୍ଯ୍ୟକଳାପ ସହ ମଧ୍ୟ ଜଡ଼ିତ ହୋଇସାରିଥିଲେ । ଆରମ୍ଭରୁ ହିଁ ମାର୍କ୍ସବାଦୀ – ଲେନିନବାଦୀ ଶିକ୍ଷା ସଂସ୍ପର୍ଶରେ ଆସିଥିଲେ । ସାରାଜୀବନ ଶ୍ରମିକ ଶ୍ରେଣୀର ଦଳ – କମ୍ୟୁନିଷ୍ଟ ପାର୍ଟିରେ ନେତୃତ୍ୱକାରୀ ଭୂମିକା ଗ୍ରହଣ କରିଥିଲେ ।

ବି.ଟି. ରଣଦିଭେଙ୍କ ଜୀବନ ଓ ଶିକ୍ଷା ତାଙ୍କ ଜୀବନ କାଳ ଭିତରେ ମାର୍କ୍ସବାଦୀ-ଲେନିନବାଦୀ ସିଦ୍ଧାନ୍ତର ପ୍ରୟୋଗ ଉପରେ ଆଧାରିତ ଥିଲା । ବିଜ୍ଞାନସମ୍ମତ ବିଶ୍ୱ ଦୃଷ୍ଟଭଙ୍ଗି ଦ୍ୱାରା ହିଁ ଆମେ ଆମ ସମୟରେ ସମସ୍ତ ସମସ୍ୟାର ସଠିକ୍ ସମାଧାନ ସୂତ୍ର ପାଇଥାଉ । ତେଣୁ ମଣିଷ ଉପରେ ମଣିଷର ଶୋଷଣକୁ ଲୋପ କରିବାପାଇଁ ଏବଂ ଏ ବାଟରେ ସଠିକ୍ ଦିଗ୍‌ନିର୍ଦ୍ଦେଶ ହାସଲ କରିବାକୁ ହେଲେ, ଆମକୁ ଏହି ବିପ୍ଳବୀ ଆନ୍ଦୋଳନର ଦର୍ଶନ ବିଷୟରେ ଶିକ୍ଷା ଲାଭ କରିବାକୁ ପଡ଼ିବ ।

ବାଲଚନ୍ଦ୍ର ତ୍ରିମ୍ବକ ରଣଦିଭେ ୧୯୦୪ ଡିସେମ୍ବର ୧୯ ତାରିଖ ଦିନ ବମ୍ବେର ଦାଦର ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଜଣେ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ ଏବଂ ଆୟକର ଅଫିସ୍‌ର ଥିଲେ । ସେ ସବୁଧର୍ମ ମଧ୍ୟରେ ଏକତା ପ୍ରଚାର କରୁଥିବା ପ୍ରାର୍ଥନା ସମାଜରେ ଯୋଗ ଦେଇଥିଲେ । ରାଜନୈତିକ ଭାବେ ଉଦାର ମତବାଦୀ ଗୋପାଳ କୃଷ୍ଣ ଗୋଖଲେଙ୍କ ସମର୍ଥକ ଥିଲେ । ରଣଦିଭେଙ୍କ ମାତା ଯଶୋଦା ଅତ୍ୟନ୍ତ ସ୍ନେହଶୀଳା ମହିଳା ଥିଲେ ଏବଂ ବାଲଚନ୍ଦ୍ରଙ୍କ ଶୈଶବ ଲାଳନ ପାଳନ ଉପରେ ଏହାର ଗଭୀର ପ୍ରଭାବ ପଡ଼ିଥିଲା । ବି.ଟି. ରଣଦିଭେଙ୍କର ତିନି ଭାଇ ଓ ଚାରିଜଣ ଭଉଣୀ ଥିଲେ ।

ବି.ଟି. ରଣଦିଭେଙ୍କ ପିତା କଂଗ୍ରେସ ଦଳ ଓ ସ୍ୱାଧୀନତା ସଂଗ୍ରାମର ସମର୍ଥକ ଥିଲେ । ବାଲ୍ୟକାଳରୁ ରଣଦିଭେଙ୍କ ଉପରେ ଦେଶ ପ୍ରେମର ପ୍ରଭାବ ପଡ଼ିଥିଲା । ଭାଇ ଭଉଣୀଙ୍କ ମଧ୍ୟରୁ ଅହଲ୍ୟା ରଂଗନେକର ଓ ପି.ବି. ରଂଗନେକରଙ୍କ ବ୍ୟତିତ ଅନ୍ୟମାନେ ରାଜନୀତିରେ ଅଂଶ ଗ୍ରହଣ କରିନଥିଲେ ମଧ୍ୟ ପରିବାରର ଅନ୍ୟମାନେ ପ୍ରଚଳିତ ରାଜନୈତିକ ଧାରା ପ୍ରତି ଆଗ୍ରହି ଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେଜଣ କମ୍ୟୁନିଷ୍ଟ ଦଳରେ ଯୋଗ ଦେଇଥିଲେ ।

ବି.ଟି. ରଣଦିଭେ ଆରମ୍ଭରୁ ହିଁ ଛାତ୍ର ଜୀବନରେ ଜଣେ ମେଧାବୀ ଛାତ୍ର ଥିଲେ । ସାଥୀମାନଙ୍କ ସହ ରାଜନୈତିକ ଆଲୋଚନା କରୁଥିଲେ ଓ ରାଜନୈତିକ ସଭା ସମିତି ଗୁଡ଼ିକରେ ଯୋଗଦାନ କରୁଥିଲେ । ବହିପଢ଼ିବା ତାଙ୍କର ମୁଖ୍ୟ ରୁଚି ଥିଲା । ଆରମ୍ଭରେ ଲୋକମାନ୍ୟ ତିଲକ ଓ ଗାନ୍ଧିଜୀଙ୍କ ଆଦର୍ଶରେ ପ୍ରଭାବିତ ହୋଇଥିଲେ । ଇତିହାସ ଓ ଅର୍ଥନୀତିରେ ୧୯୨୫ରେ ଖୁବ୍ ଭଲ ଭାବେ ଉପାଧି ପାଇବା ପରେ ଉପାଧି ଉତ୍ତର ଶିକ୍ଷା ପାଇଁ ସ୍କଲାରସିପ୍ ପାଇଥିଲେ । ପାଠ ପଢ଼ିବା ସାଙ୍ଗେ ସାଙ୍ଗେ ଗାନ୍ଧୀଜୀଙ୍କ ଅସହଯୋଗ ଆନ୍ଦୋଳନକୁ ଉତ୍ସାହର ସହ ସମର୍ଥନ କରୁଥିଲେ । ୧୯୨୪ରେ ଚୌରିଚୌରା ଘଟଣା ପରିପ୍ରେକ୍ଷୀରେ ଦୁଇଜଣ ପୋଲିସ୍ କର୍ମିଙ୍କୁ ପୋଡ଼ି ମାରିବା ଦୁର୍ଘଟଣା ପରିପ୍ରେକ୍ଷୀରେ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନକୁ "ହିମାଳୟ ତୁଲ୍ୟ ଭୁଲ୍" କହି ପ୍ରତ୍ୟାହାର କରିନେବା, ବି.ଟି. ରଣଦିଭେଙ୍କୁ ହତୋସାହ କରିଥିଲା ଏବଂ ଆନ୍ଦୋଳନ ପ୍ରତ୍ୟାହାର ଅନୁଚିତ ମନେ କରିଥିଲେ । ୧୯୨୫ରେ ବି.ଟି. ରଣଦିଭେ ବମ୍ବେ ସ୍କୁଲ ଅଫ୍ ଇକୋନୋମିକ୍ସରେ ଏମ୍.ଏ ଡିଗ୍ରି ପାଇଁ ପ୍ରବେଶ କରିଥିଲେ । ଜନସଂଖ୍ୟା ସମସ୍ୟା ଉପରେ ଏକ ସାରଗର୍ଭକ ଥେସିସ୍ ଲେଖିଥିଲେ । ୧୯୨୭ରେ ସେ ଅର୍ଥଶାସ୍ତ୍ରରେ ସ୍ୱର୍ଣ୍ଣ ପଦକ ସହ ଡିଗ୍ରି ପାଇଥିଲେ । କଲେଜରୁ ତାଙ୍କୁ ତିନିବର୍ଷ ପାଇଁ ଗବେଷଣା ନିମନ୍ତେ ସ୍କଲାରସିପ୍ ମିଳିଥିଲେ ସୁଧା ଏହା ପରିତ୍ୟାଗ କରି ସକ୍ରିୟ ରାଜନୀତିରେ ଯୋଗ ଦେଇଥିଲେ ।

ବି.ଟି. ରଣଦିଭେଙ୍କ ପୁତୁରା ଜି.ଏମ୍. ଅଧିକାରୀ ୧୯୨୫ରେ କେମେଷ୍ଟ୍ରୀରେ ଡକ୍ଟରେଟ୍ ଉପାଧି ପାଇଁ ଜର୍ମାନରେ ଥିଲା ବେଳେ କିଛି କମ୍ୟୁନିଷ୍ଟମାନଙ୍କ ସହ ସଂସ୍ପର୍ଶରେ ଆସିଥିଲେ । ବିଭିନ୍ନ କମ୍ୟୁନିଷ୍ଟ ସାହିତ୍ୟ ଲୁଚେଇ ଛପେଇ ଗୁପ୍ତରେ ବି.ଟି. ରଣଦିଭେଙ୍କ ପାଖକୁ ପଠାଉଥିଲେ । ବି.ଟି. ରଣଦିଭେ ରଜନୀ ପାମ୍ ଦତ୍ତଙ୍କ ଦ୍ୱାରା ଲଣ୍ଡନରେ ପ୍ରକାଶିତ ହେଉଥିବା 'ଲେବର ମଂଥଲୀ' ସଂସ୍ପର୍ଶରେ ଆସିଥିଲେ । ସେ ଲେନିନଙ୍କର ନିର୍ବାଚିତ ରଚନାବଳୀ କିଣିଥିଲେ । ଲୁଚେଇ ଛପେଇ ଯାହା କିଛି ମାର୍କ୍ସବାଦୀ ସାହିତ୍ୟ ପାଉଥିଲେ ଏହା ଅତ୍ୟନ୍ତ ସତର୍କ ଭାବେ ପାଠ କରୁଥିଲେ । ୧୯୨୮ରେ ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଠିକ୍ ସେଇ ବର୍ଷ, ସେ ଟେକ୍ସଟାଇଲ ମିଲ୍ ଶ୍ରମିକ ମାନଙ୍କ ନେତୃତ୍ୱ ସଂସ୍ପର୍ଶରେ ଆସିଥିଲେ ଏବଂ ସେମାନଙ୍କ ସହ କାମ କରିବା ଆରମ୍ଭ କରିଥିଲେ । ୧୯୨୮ରେ 'କ୍ରାନ୍ତି' ନାଁରେ ଏକ ମରାଠି ସାପ୍ତାହିକ ପ୍ରକାଶ କଲେ । ୧୯୨୯ରେ ସେ ଏକ ଶ୍ରମିକ ସମାବେଶରେ ଭାଷଣ ଦେଉଥିବା ବେଳେ ପୋଲିସ୍ ତାଙ୍କୁ ଗିରଫ୍ କରିଥିଲେ ଏବଂ ଜେଲ୍‌ରେ ରଖିଥିଲେ ।

ଜେଲରୁ ମୁକୁଳିବା ପରେ କମ୍ରେଡ୍ ବି.ଟି. ରଣଦିଭେ ରେଳବାଇ ଶ୍ରମିକମାନଙ୍କ ଆନ୍ଦୋଳନ ସଂସ୍ପର୍ଶରେ ଆସିଥିଲେ ଏବଂ ଜି.ଆଇ.ପି. ରେଲୱେ ମେନ୍ସ ୟୁନିୟନର ସମ୍ପାଦକ ନିର୍ବାଚିତ ହୋଇଥିଲେ । ଯେତେବେଳେ ୟୁନିୟନର ଧର୍ମଘଟ ପ୍ରସ୍ତୁତି ଚାଲିଲା, ବି.ଟି. ରଣଦିଭେ ଗିରଫ୍ ହୋଇ ବର୍ଷେ କାଳ ଜେଲରେ ଥିଲେ ।

୧୯୨୯ରେ ବିଲାତ ସରକାର ରୟାଲ କମିସନ ଅଫ୍ ଲେବର ତଥା ହ୍ୱିଟ୍ଲେ କମିସନ ବସାଇଲେ । ଏ.ଆଇ.ଟି.ୟୁ.ସିର ସଭାପତି ଜବାହାର ଲାଲ ନେହେରୁ ଏ କମିସନ ବର୍ଜନ ପାଇଁ ଶ୍ରମିକମାନଙ୍କୁ ଡାକରା ଦେଇଥିଲେ । କିନ୍ତୁ ଏ.ଆଇ.ଟି.ୟୁ.ସି ରୁ ସରକାରୀ ମନୋନିତ ନେତା ଏନ୍.ଏମ୍. ଜୋଶି ଓ ଦିବାନ ଅମନ୍‌ଲାଲ କମିସନର ମେମ୍ବର ବନି ରହିଥିଲେ । ପରେ ଏନ୍.ଏମ୍. ଜୋଶି ଏ.ଆଇ.ଟି.ୟୁ.ସିରୁ ବାହାରି ଯାଇ ଇଣ୍ଡିୟାନ ଫେଡ୍ରେରେସନ ଅଫ୍ ଟ୍ରେଡ୍ ୟୁନିୟନ ଗଠନ କରିଥିଲେ । ବି.ଟି. ରଣଦିଭେ ହ୍ୱିଟଲେ କମିସନର ବୈଠକ ବର୍ଜନକୁ ସମର୍ଥନ କରିଥିଲେ । ୧୯୩୦ରେ ସେ ଏକ ଇଂରାଜି ପତ୍ରିକା "ଓ୍ୱାର୍କର୍ସ ଓ୍ୱିକଲୀ" ବାହାର କରିଥିଲେ ।

ଏହି ସମୟ ମଧ୍ୟରେ ଗାନ୍ଧୀଜୀ ଏକ ସଭାରେ ଉଦ୍‌ବୋଧନ ପାଇଁ ବମ୍ବେ ଆସିଥିଲେ । ପାରେଲରେ ଅନୁଷ୍ଠିତ ଏହି ସଭାରେ ବି.ଟି. ରଣଦିଭେ ସାହାସର ସହ ମଞ୍ଚ ଉପରକୁ ଉଠି ଭଗତସିଂଙ୍କ ଫାଶି ଦଣ୍ଡ ଓ ମେରଠ ଷଡ଼ଯନ୍ତ୍ର ମାମଲାରେ ଗାନ୍ଧିଜୀଙ୍କ ମତାମତ ବିଶ୍ୱାସଘାତକତା ପୂର୍ଣ୍ଣ ଅଭିଯୋଗ କରିଥିଲେ । ଗାନ୍ଧୀ ନୀରବରେ ସବୁକଥା ଶୁଣିଥିଲେ ଏବଂ ଯୁବକ ଜଣକ ମଞ୍ଚରୁ ଓହ୍ଲାଇବାପରେ ଭାଷଣ ଆରମ୍ଭ କରିଥିଲେ ।

ସେଇବେଳକୁ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ କଂଗ୍ରେସ ପ୍ରତି ଦୃଷ୍ଟିଭଙ୍ଗୀକୁ ନେଇ ମତ ଭେଦ ଆରମ୍ଭ ହୋଇଥିଲା । ବି.ଟି. ରଣଦିଭେ ଓ ଅନ୍ୟମାନେ ବଲସେଭିକ ପାର୍ଟି ଗଠନ କରିଥିଲେ । କଂଗ୍ରେସ ପ୍ରତି ଦୃଷ୍ଟିଭଙ୍ଗି ହିଁ କମ୍ୟୁନିଷ୍ଟ ଦଳ ଠାରୁ ଅଲଗା ହୋଇ ଭିନ୍ନଦଳ ଗଠନ ପାଇଁ ସେମାନଙ୍କୁ ପ୍ରେରିତ କରିଥିଲା । କିନ୍ତୁ ପରେ ଇଂଲଣ୍ଡ, ଚୀନ୍ ଓ ଜର୍ମାନର କମ୍ୟୁନିଷ୍ଟ ଦଳମାନେ ମିଳିତଭାବେ ଏକତା ପ୍ରତିଷ୍ଠାପାଇଁ ଚିଠି ଲେଖିଥିଲେ । ବଲସେଭିକ୍ ପାର୍ଟିର ବିଲୟ ଘଟିଲା, ବି.ଟି. ରଣଦିଭେ ଓ ଅନ୍ୟମାନେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ୧୯୩୪ରେ କମ୍ୟୁନିଷ୍ଟ ପାର୍ଟିର ଏକ କେନ୍ଦ୍ର ପ୍ରତିଷ୍ଠା କରାଗଲା, ଏବଂ ଏହାର କେନ୍ଦ୍ର କମିଟିରେ ରଣଦିଭେଙ୍କୁ ସାମିଲ କରାଗଲା ।

ସେତେବେଳେ ବମ୍ବେର ଟେକ୍ସଟାଇଲ୍ ଶ୍ରମିକ ମାନଙ୍କ ଆନ୍ଦୋଳନ କ୍ଷେତ୍ରରେ ନୂଆ ହୋଇ ଲଢୁଆ ମନୋଭାବର ବିକାଶ ଘଟୁଥାଏ । ଗିରିନି କମାଗାର ୟୁନିୟନରେ ସଂଶୋଧନବାଦୀ ନେତୃତ୍ୱକୁ ପରାଜିତ କରି କମ୍ୟୁନିଷ୍ଟ ମାନଙ୍କ ନେତୃତ୍ୱ ପ୍ରତିଷ୍ଠିତ ହେଲା । ଟେକ୍ସଟାଇଲ ଶ୍ରମିକମାନଙ୍କ ଏକ ଶକ୍ତିଶାଳୀ ଆନ୍ଦୋଳନ ମହଙ୍ଗା ଭତ୍ତା କାଟ ଛାଟ ବିରୁଦ୍ଧରେ ସଂଗଠିତ ହୋଇ କ୍ରମେ ବ୍ୟାପକ ଆକାର ଧାରଣ କଲା । ରଣଦିଭେଙ୍କ ଦ୍ୱାରା ପ୍ରକାଶିତ 'ବମ୍ବେଇ କାମାଗାର' ସାପ୍ତାହିକ ଶ୍ରମିକମାନଙ୍କ ମଧ୍ୟରେ ବହୁଳ ପ୍ରସାରିତ ହେଉଥିଲା । ବିଲାତ ସରକାର ବି.ଟି. ରଣଦିଭେ ଓ

ଜି. ଅଧିକାରୀଙ୍କୁ ଦୁଇବର୍ଷ ଯାଏ ଜେଲରେ ଅଟକ ରଖିଥିଲେ । ଦୁର୍ବିସହ ଜେଲ ଜୀବନ ଭିତରେ ରଣଦିଭେ ମାର୍କ୍ସବାଦୀ ସାହିତ୍ୟର ଗଭୀର ଅଧ୍ୟୟନ କରିଥିଲେ ।

ଜେଲରୁ ଛାଡ଼ ପାଇ ରଣଦିଭେ ପୁନର୍ବାର ଟ୍ରେଡ୍‌ୟୁନିୟନ ଆନ୍ଦୋଳନରେ ଅଂଶ ଗ୍ରହଣ କଲେ । ୧୯୩୭ରେ କଂଗ୍ରେସ ଦଳ ନିର୍ବାଚନରେ ଜିତି ବମ୍ବେ ପ୍ରଦେଶରେ ସରକାର ଗଠନ କରିଥିଲା । ଶ୍ରମିକ ଧର୍ମଘଟ ଅଧିକାରକୁ ଆକ୍ରମଣ କରି ୧୯୩୮ରେ ବମ୍ବେ ବିଧାନସଭାରେ ବମ୍ବେ ଇଣ୍ଡଷ୍ଟ୍ରିୟାଲ୍ ଡିସ୍‌ପ୍ୟୁଟ୍ ବିଲ୍ ପାସହେଲା । ଏଥିରେ ମ୍ୟାନେଜମେଣ୍ଟର ବୋଲକରା ୟୁନିୟନକୁ ସ୍ୱୀକୃତି ପ୍ରଦାନ ପାଇଁ ବ୍ୟବସ୍ଥା ଖଞ୍ଜି ଦିଆଗଲା । ଶ୍ରମିକମାନଙ୍କ ଆନ୍ଦୋଳନ ଉପରେ ବିଭିନ୍ନ କଟକଣା ଲଦିଦଆଗଲା । ଏହି ବିଲ୍ ବିରୁଦ୍ଧରେ ବମ୍ବେର ଟେକ୍ସଟାଇଲ୍ ଶ୍ରମିକମାନେ ପ୍ରତିବାଦ ଧର୍ମଘଟରେ ସାମିଲ ହୋଇଥିଲେ । ଡକ୍ଟର ଆମ୍ବେଦକର ମଧ୍ୟ ଏହି ଧର୍ମଘଟକୁ ସମର୍ଥନ କରିଥିଲେ । ପ୍ରେସିଡ଼େନ୍ସି ବ୍ୟତିତ ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଏହି ଧର୍ମଘଟ ସଫଳ ହୋଇଥିଲା ।

କମ୍ରେଡ଼ ବି.ଟି. ରଣଦିଭେ ବିମଳ ଶରଦେଶାଇଙ୍କ ସହ ୧୯୩୯ରେ ଟେକ୍ସଟାଇଲ ଶ୍ରମିକ ଧର୍ମଘଟ ବେଳେ ପରିଚିତ ହୋଇଥିଲେ । ଆନ୍ଦୋଳନ କାର୍ଯ୍ୟକ୍ରମ ଭିତରେ ପରସ୍ପର ନିକଟବର୍ତ୍ତୀ ହୋଇଥିଲେ ଓ ପରେ ବିବାହ କରିଥିଲେ । ବିମଳ ରଣଦିଭେ ମଧ୍ୟ ଶେଷ ଜୀବନ ଯାଏ ଶ୍ରମିକ ଆନ୍ଦୋଳନକୁ ନେତୃତ୍ୱ ପ୍ରଦାନ କରିଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପହିଲା ସେପ୍ଟେମ୍ବର ୧୯୩୯ରେ ଆରମ୍ଭ ହୋଇଥିଲା ଏବଂ ଦେଶସାରା ବିଭିନ୍ନ ଆଡ଼େ ଏହି ଯୁଦ୍ଧ ବିରୁଦ୍ଧରେ ଧର୍ମଘଟମାନ ସଂଗଠିତ ହୋଇଥିଲା । ବିଲାତ ସରକାର କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପ୍ରକାଶିତ 'ନେସନାଲ ଫ୍ରଣ୍ଟ' ଓ 'କ୍ରାନ୍ତି' ପତ୍ରିକା ଗୁଡ଼ିକୁ ବେଆଇନ୍ କରିଦେଇଥିଲେ । ବି.ଟି. ରଣଦିଭେ ଗିରଫ ହୋଇ ରାଜସ୍ଥାନର ଦେଉଳି ଜେଲରେ ଥିଲେ । ଜେଲଖାନାରେ କଏଦି ମାନଙ୍କ ଦୁର୍ଦ୍ଦଶା ବିରୁଦ୍ଧରେ ସେଠାରେ ସେ ଆନ୍ଦୋଳନ ସଂଗଠିତ କରିବା ସାଙ୍ଗେ ସାଙ୍ଗେ, କଏଦି ମାନଙ୍କୁ ମାର୍କ୍ସବାଦ- ଲେନିନବାଦ ଶିକ୍ଷା ପ୍ରଦାନ କରୁଥିଲେ ।

ସେ ଜେଲରେ ଥିବା ବେଳେ ଆନ୍ତର୍ଜାତିକ ଘଟଣା ୧୯୪୧ ବେଳକୁ ନୂଆ ମୋଡ଼ ନେବା ଆରମ୍ଭ କରିଥିଲା । ହିଟଲର ସୋଭିଏତ ବିରୁଦ୍ଧରେ ବିଶ୍ୱାସଘାତୀ ଆକ୍ରମଣ ଆରମ୍ଭ କଲା । ଏହା ବିଶ୍ୱ ଯୁଦ୍ଧର ଚରିତ୍ର କ୍ଷେତ୍ରରେ ବଦଳ ଆଣିଥିଲା । ସମାଜବାଦୀ ସୋଭିଏତ ରାଷ୍ଟ୍ରର ରକ୍ଷା ଦେଶର ପ୍ରତ୍ୟେକ ପ୍ରଗତିଶୀଳ ମଣିଷମାନଙ୍କ ମୁଖ୍ୟ କର୍ତ୍ତବ୍ୟ ପାଲଟିଥିଲା । ଜେଲରେ ଥାଇ ରଣଦିଭେ ଯୁଦ୍ଧର ବଦଳୁଥିବା ଚରିତ୍ରକୁ ଲକ୍ଷ କରିଥିଲେ ଏବଂ ସୋଭିଏତ ୟୁନିୟନର ରକ୍ଷା ଓ ଫ୍ୟାସିବାଦକୁ ପରାସ୍ତ କରିବା ପାଇଁ ଜନସାଧାରଣଙ୍କୁ ଡାକରା ଦେଇଥିଲେ । ଏ ସମ୍ପର୍କରେ ତାଙ୍କ ଥେସିସ୍‌କୁ ପାର୍ଟି ଗ୍ରହଣ କରିଥିଲା । ଏହା 'ଦେଓଲୀ ଥେସିସ୍' ନାମରେ ପରିଚିତ ।

ଭାରତ ସରକାର କମ୍ୟୁନିଷ୍ଟ ପାର୍ଟି ଉପରୁ ନିଷେଧାଜ୍ଞା ଜୁଲାଇ ୧୯୪୨ରେ ଉଠାଇ ନେଇଥିଲା । ରଣଦିଭେ ଅନ୍ୟାନ୍ୟ କମ୍ୟୁନିଷ୍ଟ ନେତାମାନଙ୍କ ସମେତ ଜେଲରୁ ମୁକୁଳି ଥିଲେ ।

୯ ଅଗଷ୍ଟ ୧୯୪୭ରେ କଂଗ୍ରେସ 'ଭାରତ ଛାଡ଼' ଆନ୍ଦୋଳନ ଡାକରା ଦେଲା । ବିଲାତ ସରକାର ସମସ୍ତ ପ୍ରମୂଖ କଂଗ୍ରେସ ନେତମାନଙ୍କୁ ଗିରଫ କଲେ ଓ ଗାନ୍ଧିଜୀ 'କର ବା ମର' ଆନ୍ଦୋଳନ ଡାକରା ଦେଲେ । କମ୍ୟୁନିଷ୍ଟ ମାନେ ଏ ଆନ୍ଦୋଳନର ସ୍ୱରୂପ ଓ ତରିକା ସହ ଏକମତ ହେଲେ ନାହିଁ, କାରଣ ବିଶ୍ୱସାରା ଫ୍ୟାସିବାଦକୁ ପରାସ୍ତ କରିବା କାମକୁ ମୁଖ୍ୟ ବିଚାର କରାଯାଇଥିଲା । ହିଟଲରଙ୍କ ଫ୍ୟାସିଷ୍ଟ ସେନା ଷ୍ଟାଲିନ୍‌ଗ୍ରେଡ଼ ପହଞ୍ଚିସାରିଥିଲେ ଏବଂ ସୋଭିଏତର ସେନାବାହିନୀ ବିଶ୍ୱକୁ ଫ୍ୟାସିଷ୍ଟ ଲୁଣ୍ଠନକାରୀଙ୍କ କବଳରୁ ବିଶ୍ୱକୁ ରକ୍ଷା କରୁଥିଲା । ମୁସୋଲିନୀଙ୍କ ଫ୍ୟାସିଷ୍ଟ ସେନା ଉତ୍ତର ଆଫ୍ରିକା ଆକ୍ରମଣ କରିଥିଲା ଏବଂ ମିତ୍ର ଶକ୍ତିମାନଙ୍କ ସେନାବାହିନୀ ପଛଘୁଞ୍ଚା ଦେଉଥିଲେ । ଏହା ସାଙ୍ଗକୁ ଜାପାନ ସେନା ସମଗ୍ର ଦକ୍ଷିଣପୂର୍ବ ଏସିଆ ଦଖଲ କରି ସାରିଥିଲା ଏବଂ ଆମେରିକାର ପର୍ଲହାରବର ଉପରେ ଆକ୍ରମଣ କରିଥିଲା । ଯେତେବେଳେ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ଫ୍ୟାସିବାଦକୁ ପରାସ୍ତ କରିବା କାମ ପ୍ରଥମ କାମ କୁହାଗଲା, ସେତେବେଳେ କଂଗ୍ରେସ କମ୍ୟୁନିଷ୍ଟ ମାନଙ୍କୁ ସାମ୍ରାଜ୍ୟବାଦୀମାନଙ୍କ ସମର୍ଥକ କହି ସମାଲୋଚନା କରିଥିଲା । କମ୍ରେଡ଼ ରଣଦିଭେ ଓ ଅନ୍ୟ କମ୍ୟୁନିଷ୍ଟ ପାର୍ଟି ନେତାମାନେ ରାଜବନ୍ଦି ମାନଙ୍କ ମୁକ୍ତିଦାବି ଉପରେ ଅଭିଯାନ ଚଳେଇବା ପାଇଁ ଏବଂ ଜାପାନୀ ଫ୍ୟାସିବାଦୀ ସେନାର ଆକ୍ରମଣ ବିରୁଦ୍ଧରେ ଜାତୀୟ ଏକତା ବଜାୟ ରଖିବା ପାଇଁ ଡାକରା ଦେଇଥିଲେ । କମ୍ୟୁନିଷ୍ଟ ପାର୍ଟି, କଂଗ୍ରେସ ଓ ମୁସଲିମ ଲିଗ୍‌କୁ ଏକଜୁଟ ହୋଇ ଫ୍ୟାସିଷ୍ଟ ଲୁଣ୍ଠନକାରୀଙ୍କ ବିରୁଦ୍ଧରେ ବିଲାତ ସରକାରର ବିଫଳତାକୁ ନିନ୍ଦା କରିବା ସାଙ୍ଗେ ସାଙ୍ଗେ ବିରୋଧ ପାଇଁ ଡାକରା ଦେଇଥିଲା । ପରିସ୍ଥିତି ପରିପ୍ରେକ୍ଷିରେ କମ୍ୟୁନିଷ୍ଟ ପାର୍ଟି 'ରାଷ୍ଟ୍ରିୟ ସରକାର' ଗଠନ ଦାବି ଉଠାଇ ଥିଲା । ସେତେବେଳେ କମ୍ୟୁନିଷ୍ଟ ବିରୋଧୀ ସମସ୍ତ ଅପପ୍ରଚାର କୁତ୍ସା ବିରୁଦ୍ଧରେ କମ୍ରେଡ଼ ରଣଦିଭେ ଆଗକୁ ଆଗେଇ ଉତ୍ତର ଦେଉଥିଲେ ।

ମଇମାସ ୧୯୪୩ରେ ବମ୍ବେଠାରେ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ସେ ବେଳର ବଙ୍ଗ ଦୁର୍ଭିକ୍ଷ ଓ ତେରଭାଗା କୃଷକ ଆନ୍ଦୋଳନ ଏବଂ ମହାରାଷ୍ଟ୍ରର ଓରଲି ବିଦ୍ରୋହ କ୍ଷେତ୍ରରେ କମ୍ରେଡ଼ ରଣଦିଭେ ମହତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ଏହି ସମୟର ତ୍ରାଭାନକୋରର ପୁନ୍ନାପାରା ଭାଲାୟାର କୃଷକ ଆନ୍ଦୋଳନ, ବନ୍ଦି ଆଜାଦ ହିନ୍ଦ ଫଉଜ ମାନଙ୍କ ମୁକ୍ତି ପାଇଁ ଦାବି, ରୟଲ ଇଣ୍ଡିୟାନ ନେଭିର ବମ୍ବେ ହାରବରରେ ବିଦ୍ରୋହ ଏବଂ ଏହାକୁ ସମର୍ଥନ କରି ଶ୍ରମିକମାନଙ୍କ ଧର୍ମଘଟ ଆନ୍ଦୋଳନ, ହାଇଦ୍ରାବାଦ ନିଜାମଙ୍କ ବିରୁଦ୍ଧରେ ତେଲଗାଂନା କୃଷକମାନଙ୍କ ଆନ୍ଦୋଳନ ପ୍ରଭୃତି ଭାରତୀୟ ସ୍ୱାଧୀନତା ସଂଗ୍ରାମର ଯୁଗାନ୍ତକାରୀ ଆନ୍ଦୋଳନ ଥିଲା । କମ୍ରେଡ଼ ରଣଦିଭେ ଜନସାଧାରଣଙ୍କ ମନରେ ସାମ୍ରାଜ୍ୟବାଦ ବିରୋଧୀ

ଚେତନାକୁ ଜାଗ୍ରତ କରିବା ଲକ୍ଷରେ ଏ ସବୁ ଆନ୍ଦୋଳନ ଉପରେ ବିସ୍ତାର ପୂର୍ବକ ଲେଖାମାନ ଲେଖିଥିଲେ ।

ମହାନ ତ୍ୟାଗ ପରେ, ସୋଭିଏତ ଓ ଲାଲସେନା ଜର୍ମାନ ଫ୍ୟାସିଷ୍ଟ ସେନାର ମୁଖ୍ୟ ଶକ୍ତିକୁ ୧୯୪୫ ମସିହାରେ ଶେଷଥର ପାଇଁ ପରାସ୍ତ କରିଥିଲା । ପୂର୍ବ ୟୁରୋପକୁ ମୁକ୍ତକରି ବର୍ଲିନ ଅଭିମୂଖେ ଯାତ୍ରା ଆରମ୍ଭ କରିଥିଲା । ସେତେବେଳେ ଆମେରିକା ଓ ବିଲାତ ସେନାବାହିନୀ ସୋଭିଏତ ଅଗ୍ରଗତିକୁ ବାଧା ଦେବା ପାଇଁ ଦ୍ଵିତୀୟ ଫ୍ରଣ୍ଟ ଖୋଲିଲେ । ଦ୍ଵିତୀୟ ବିଶ୍ଵଯୁଦ୍ଧ ଫାସିଷ୍ଟ ସେନାର ପରାଜୟ ଓ ପଛଘୁଞ୍ଚା ଭିତର ଦେଇ ଶେଷ ହେବାକୁ ଯାଉଥିବା ବେଳେ, ହିରୋସୀମା ଓ ନାଗାସାକି ଉପରେ ଆମେରିକା ୬ ଓ ୯ ଅଗଷ୍ଟ ୧୯୪୫ ଦିନ ଆଟମ୍‌ବୋମା ନିକ୍ଷେପ କରିଥିଲା ।

ଭାରତବର୍ଷରେ ଜନଗଣଙ୍କ ସାହାସିକତା ପୂର୍ଣ୍ଣ ସଂଗ୍ରାମ ଯୋଗୁ ବିଲାତ ସାମ୍ରାଜ୍ୟବାଦୀ ମାନେ ଭାରତୀୟ ନେତାମାନଙ୍କ ହାତରେ କ୍ଷମତା ଅର୍ପଣ କରିଥିଲେ କିନ୍ତୁ ଦେଶ ଭାରତ ଓ ପାକିସ୍ଥାନ ଭାବେ ବାଣ୍ଟି ହୋଇଗଲା । ଦେଶସାରା ସାଂଘାତିକ ସାମ୍ପ୍ରଦାୟିକ ଦଙ୍ଗା ଗୋଳ ଚାଲିଥିଲାବେଳେ କମ୍ୟୁନିଷ୍ଟ ପାର୍ଟି ଜନଗଣଙ୍କୁ ଦୃଢ଼ଭାବେ ଏକାଠି କରିବା ପାଇଁ ଓ ସାମ୍ପ୍ରଦାୟିକ ଦଙ୍ଗା ବନ୍ଦ କରିବା ପାଇଁ କାମକରିଥିଲା । ଦେଶରେ ଏକ ମଧ୍ୟବର୍ତ୍ତି କାଳୀନ ସର୍କାର ୧୫ ଅଗଷ୍ଟ ୧୯୪୭ ମସିହାରେ ଗଠନ କରାଯାଇ, ଦେଶକୁ ସ୍ଵାଧୀନ କରାଗଲା । ସେହି ସମୟରେ କମ୍ୟୁନିଷ୍ଟ ପାର୍ଟି କେତେକ ସୁଧାରବାଦୀ ବିଚ୍ୟୁତୀର ଶିକାର ହୋଇ ପୁଞ୍ଜିବାଦୀପାର୍ଟି ମାନଙ୍କର ଲାଙ୍ଗୁଡ଼ ଭଳି ବ୍ୟବହାର କରିଥିଲା । କମ୍ରେଡ଼ ରଣଦିଭେ ଏ ଭୁଲକୁ ଅନୁଭବ କରିଥିଲେ । ଏପରି ଭୁଲର ଚରିତ୍ର ଓ କାରଣ ବ୍ୟାଖା କରିଥିଲେ ଏବଂ ସମଗ୍ର ପାର୍ଟିକୁ ଏକତାବଦ୍ଧ କରିବାପାଇଁ ଗୁରୁତ୍ଵପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ୧୯୪୮ରେ ଯେତେବେଳେ କଲିକତାଠାରେ କମ୍ୟୁନିଷ୍ଟ ପାର୍ଟିର ଦ୍ଵିତୀୟ କଂଗ୍ରେସ ଅନୁଷ୍ଠିତ ହୁଏ, ସେଠାରେ ସେ ପାର୍ଟିର ସାଧାରଣ ସମ୍ପାଦକ ଭାବେ ନିର୍ବାଚିତ ହୋଇଥିଲେ । ଏହା ପରେ ପରେ କଂଗ୍ରେସ ପାର୍ଟି ସରକାର କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ଘୋଷଣା କରିଥିଲା ଏବଂ ୨୫,୦୦୦ ସକ୍ରୀୟ କମ୍ୟୁନିଷ୍ଟ କର୍ମି ମାନଙ୍କୁ ଗିରଫ କରାଯାଇଥିଲା । ବି.ଟି. ରଣଦିଭେ ଅଣ୍ଡର ଗ୍ରାଉଣ୍ଡରେ ୧୯୫୦ ଯାଏ ରହିଲେ । ସେତେବେଳେ ପାର୍ଟି ନୀତି ପରିଚାଳନା କ୍ଷେତ୍ରରେ କେତେକ ଶୋଚନୀୟ ସେକ୍ଟେରିୟାନ ବିଚ୍ୟୁତି ଘଟିଥିଲା । ଏହାର ପ୍ରଭାବ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଉପରେ ମଧ୍ୟ ପଡ଼ିଥିଲା । ବିଭିନ୍ନ ସମୟରେ ଯେଉଁ ଧର୍ମଘଟ ଡାକରା ଦିଆଗଲା ଏହା ସଫଳ ହେଲାନାହିଁ । ଜେଲରେ ଅଟକବନ୍ଦି ମାନଙ୍କ ହଟକାରୀ ଆନ୍ଦୋଳନ ପରିଚାଳନା ଫଳରେ ବହୁ ମୁଲ୍ୟବାନ ସାଥୀ ପ୍ରାଣ ହରାଇଲେ । ବହୁ ପାର୍ଟି ସାଥୀମାନଙ୍କ ବିରୁଦ୍ଧରେ ଅନୁଚିତ୍ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନମାନ ଗୃହିତ ହୋଇଥିଲା । କମ୍ୟୁନିଷ୍ଟ ଇନ୍‌ଫରମେସନ ବ୍ୟୁରୋର ହସ୍ତକ୍ଷେପ କ୍ରମେ ତୃଟି ଗୁଡ଼ିକୁ ସଂଶୋଧନ କରାଯାଇଥିଲା ।

ରଣଦିଭେ ପାର୍ଟି ସାଧାରଣ ସମ୍ପାଦକ ପଦ ଓ କେନ୍ଦ୍ର କମିଟିରୁ ଅପସାରିତ ହୋଇ ଥିଲେ । ସେ ନିଜ ଦୋଷ ସ୍ୱୀକାର କରିଥିଲେ ଏବଂ ନିଜ କାର୍ଯ୍ୟ ବମ୍ବେଠାରେ ଏକ ସାଧାରଣ ପାର୍ଟି ସଭ୍ୟ ଭାବେ ଜାରି ରଖିଥିଲେ ।

ଏହି ସମୟରେ ସେ ଦୁଇଟି ବହି ଲେଖିଥିଲେ : 'ଭାରତ ବର୍ଷର ପଞ୍ଚବାର୍ଷିକ ଯୋଜନା କ'ଣ ପ୍ରଦାନ କରୁଛି ?' ଏବଂ 'ଭାରତୀୟ ଅର୍ଥ ବ୍ୟବସ୍ଥାର ସଙ୍କଟ', ନାମରେ ଏହି ଦୁଇଟିଯାକ ପୁସ୍ତକ ବହୁ କ୍ଷେତ୍ରରେ ପ୍ରଶଂସିତ ହୋଇଥିଲା । ୧୯୫୫ରେ ସେ ମହାରାଷ୍ଟ୍ର ରାଜ୍ୟ କମିଟିର ସମ୍ପାଦକ ଭାବେ ସେ ଦାୟିତ୍ୱ ଗ୍ରହଣ କରିଥିଲେ ।

ରଣଦିଭେଙ୍କ ଗଭୀର ଜ୍ଞାନ ଓ ମାର୍କ୍ସବାଦୀ-ଲେନିନ୍‌ବାଦୀ ସିଦ୍ଧାନ୍ତ ଉପରେ ପାରଦର୍ଶିତା ପାର୍ଟିରେ ସର୍ବସ୍ୱୀକୃତ ଥିଲା ଏବଂ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରକମିଟିକୁ ୪ର୍ଥ କଂଗ୍ରେସରେ ପୁଣି ନିର୍ବାଚିତ ହୋଇଥିଲେ । ପାର୍ଟି ନିର୍ଦ୍ଦେଶରେ ସେ ଦିଲ୍ଲୀ କେନ୍ଦ୍ରରୁ କାମ କଲେ ଏବଂ ପାର୍ଟି ମୁଖପତ୍ର 'ନିଉ ଏଜ୍'ର କାର୍ଯ୍ୟକାରୀ ଏଡ଼ିଟର ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ ।

ସେ ସମୟରେ କମ୍ୟୁନିଷ୍ଟ ପାର୍ଟି ପୁର୍ନବାର ଆଦର୍ଶଗତ ମତଭେଦକୁ ସାମନା କରିଥିଲା ଏବଂ ରଣଦିଭେ ସଂଶୋଧନବାଦୀ ଓ ସୁଧାରବାଦୀ ନୀତି ବିରୁଦ୍ଧରେ ସଂଗ୍ରାମ ଚଳେଇଥିଲେ । ଅମୃତସର ଠାରେ ୫ମ ପାର୍ଟି କଂଗ୍ରେସ ବେଳେ ରଣଦିଭେ ଏହି ଆଦର୍ଶଗତ ପ୍ରଶ୍ନ ଗୁଡ଼ିକୁ ଉତ୍ଥାପିତ କରିଥିଲେ । ସେଠାରେ ସେ ପାର୍ଟିର କେନ୍ଦ୍ରିୟ ସମ୍ପାଦକ ମଣ୍ଡଳୀକୁ ନିର୍ବାଚିତ ହୋଇଥିଲେ ।

ପାର୍ଟି ମଧ୍ୟରେ ରଣଦିଭେଙ୍କ ପ୍ରତି ସ୍ୱୀକୃତି ତାଙ୍କ ମାର୍କ୍ସବାଦୀ-ଲେନିନବାଦୀ ଦୃଢ଼ ଦୃଷ୍ଟିଭଙ୍ଗି ଯୋଗୁ କ୍ରମେ ବୃଦ୍ଧି ପାଇଥିଲା । ୧୯୬୧ର ବିଜୟୱାଡ଼ା ଠାରେ ଅନୁଷ୍ଠିତ ୬ଷ୍ଠ ପାର୍ଟି କଂଗ୍ରେସରେ ଜାତୀୟ କାଉନସିଲର ୨୧ ଜଣ ସଭ୍ୟଙ୍କ ପକ୍ଷରୁ ସେ ପାଲଟା ଦଲିଲ ଉପସ୍ଥାପିତ କରିଥିଲେ । ପରେ କେତେକ ଭାତୃପ୍ରତିମ ପାର୍ଟିମାନଙ୍କ ହସ୍ତକ୍ଷେପ ଫଳରେ ଏକ ସାଧାରଣ ବୁଝାବଣା ଭିତ୍ତିରେ ଏକତା ପ୍ରତିଷ୍ଠା ହୋଇଥିଲା କିନ୍ତୁ ଏ ଏକତା ବେଶି କାଳ ତିଷ୍ଠିଲା ନାହିଁ ।

କମ୍ୟୁନିଷ୍ଟ ଆନ୍ଦୋଳନ କ୍ଷେତ୍ରରେ ମତଭେଦ ଭାରତ-ଚୀନ୍ ସୀମା ବିବାଦ ବେଳେ ଚରମ ହୋଇଥିଲା । ରଣଦିଭେ ଓ ଅନ୍ୟାନ୍ୟ ନେତାମାନେ ବିବାଦର ଆଲୋଚନା ଜରିଆରେ ଶାନ୍ତିପୂର୍ଣ୍ଣ ସମାଧାନ କଥା କହିଲା ବେଳେ ପାର୍ଟିର ଡୋମିନେଣ୍ଟ ଲିଡ଼ରସିପ୍ ଭାରତ ସରକାରଙ୍କ ନୀତିକୁ ସମ୍ପୂର୍ଣ୍ଣ ସମର୍ଥନ କରିଥିଲେ ଏବଂ ସରକାରଙ୍କ ଶିଳ୍ପଶାନ୍ତି ଚୁକ୍ତି ପ୍ରସ୍ତାବକୁ ଗ୍ରହଣ କରି ଧର୍ମଘଟରୁ ଶ୍ରମିକମାନଙ୍କୁ ନିବୃତ୍ତ କରିବେ ବୋଲି ପ୍ରତିଶ୍ରୁତି ପ୍ରଦାନ କରିଥିଲେ । ରଣଦିଭେଙ୍କ ସମେତ ପାର୍ଟିର ବହୁ ଗୁରୁତ୍ୱପୂର୍ଣ୍ଣ ନେତାମାନଙ୍କୁ ସରକାର ଗିରଫ କଲେ । ବି.ଟି. ରଣଦିଭେ ୧୯୬୬ରେ ଜେଲରୁ ମୁକୁଳି ଥିଲେ । ଇତିମଧ୍ୟରେ କମ୍ୟୁନିଷ୍ଟ ଆନ୍ଦୋଳନ କ୍ଷେତ୍ରରେ ମଧ୍ୟ ମତଭେଦ ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ବୃଦ୍ଧି ପାଇଥିଲା । ଆର୍ନ୍ତଜାତିକ କ୍ଷେତ୍ରରେ କମ୍ୟୁନିଷ୍ଟ

ଆନ୍ଦୋଳନ ସୋଭିଏତ ଓ ଚୀନ ପାର୍ଟିର ଖୋଲା ମତଭେଦ ଭିତ୍ତିରେ ବିଶ୍ୱବ୍ୟାପୀ ସ୍ୱରୂପ ଗ୍ରହଣ କଲା । ଅଧିକାଂଶ ପାର୍ଟି ନେତା ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ଲାଇନକୁ ସମର୍ଥନ କରିଥିଲେ ଏବଂ ସଂଖ୍ୟାଲଘୁ ଅଂଶ ଏହାର ବିରୋଧ କରିଥିଲେ । ଦେଶ ଭିତରେ ପାର୍ଟିର ଆଦର୍ଶଗତ ଲାଇନ ଓ ରଣ କୌଶଳକୁ ନେଇ ମତଭେଦ ଚରମ ହୋଇଥିଲା । କମ୍ୟୁନିଷ୍ଟ ପାର୍ଟିର ସଂଖ୍ୟା ଗରିଷ୍ଠ ନେତାମାନେ ଶ୍ରେଣୀ ସହଯୋଗ ନୀତି ଅନୁସରଣ କଲାବେଳେ, ପାର୍ଟି ଭିତରେ ଏକତା ରକ୍ଷା ଅସମ୍ଭବ ହୋଇ ପଡ଼ିଲା । ୧୯୨୪ରେ ଡାଙ୍ଗେଙ୍କ ଦ୍ୱାରା ଜେଲରୁ ମୁକୁଳିବା ପାଇଁ ବିଲାତ ସରକାରଙ୍କୁ ପ୍ରେରିତ ପତ୍ରାବଳୀ ବିବାଦକୁ ଗୁରୁତର କରିଥିଲା । ସଂଖ୍ୟା ଗରିଷ୍ଠ ନେତାମାନେ ଡାଙ୍ଗେଙ୍କ ବିରୁଦ୍ଧରେ କୌଣସି ପଦକ୍ଷେପ ନେବାକୁ ମଙ୍ଗିଲେ ନାହିଁ । ପାର୍ଟି ଜାତୀୟ ପରିଷଦର ୩୨ ଜଣ ସଭ୍ୟ ପାର୍ଟିରୁ ଅଲଗା ହୋଇ ଅନ୍ୟଏକ ପାର୍ଟି ଗଠନ ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଆନ୍ଧ୍ର ପ୍ରଦେଶର ତେନାଲୀ ଠାରେ ଏଥିପାଇଁ ଏକ କନଭେନସନ୍ ଆୟୋଜିତ ହୋଇଥିଲା । ସେଠାରେ ପାର୍ଟିର ସପ୍ତମ କଂଗ୍ରେସ କଲିକତାଠାରେ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଗଲା । ୧୯୬୪ରେ ସି.ପି.ଆଇ (ଏମ୍) ବିପ୍ଳବୀ କାର୍ଯ୍ୟକ୍ରମ ଓ ନୀତି ଭିତ୍ତିରେ ଗଠନ କରାଗଲା । ରଣଦିଭେ ପାର୍ଟିର ପଲିଟବ୍ୟୁରୋକୁ ନିର୍ବାଚିତ ହୋଇଥିଲେ ।

କମ୍ୟୁନିଷ୍ଟ ପାର୍ଟିର ବିଭାଜନ ସତ୍ତ୍ୱେ ରଣଦିଭେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ଏକତା ରକ୍ଷା ଉପରେ ଜୋର ଦେଇଥିଲେ । ଏ.ଆଇ.ଟି.ୟୁ.ସିର ୧୯୬୬ ସମ୍ମିଳନୀରେ ସେ ଟ୍ରେଡ୍ ୟୁନିୟନ ଏକତା ଏବଂ କାର୍ଯ୍ୟକ୍ରମ ଭିତ୍ତିରେ ଏକତ୍ର କାମ କରିବା ନୀତି ପାଇଁ ଡାକରା ଦେଇଥିଲେ । କିନ୍ତୁ ଡାଙ୍ଗେ ସି.ପି.ଆଇ(ଏମ୍) ନେତୃତ୍ୱକୁ ସନ୍ଦେହ କରୁଥିଲେ ଏବଂ ସେମାନେ ଏ.ଆଇ.ଟି.ୟୁ.ସି ଭିତରେ ରହି କାଳେ ସଂଗଠନକୁ ଦଖଲ କରିନେବେ ସେଥିପାଇଁ ତାଙ୍କୁ ବିରୋଧ କରୁଥିଲେ । ବି.ଟି. ରଣଦିଭେ ଏ.ଆଇ.ଟି.ୟୁ.ସିର ଜେନେରାଲ କାଉନସିଲକୁ ବମ୍ବେ ସମ୍ମିଳନୀରେ ନିର୍ବାଚିତ ହେଲେ । ଡାଙ୍ଗେ ଏବଂ ଅନ୍ୟ ନେତାମାନେ ସି.ପି.ଆଇ (ଏମ୍) ସହ ସାମିଲ ନେତାମାନଙ୍କୁ ଏକଘରକିଆ କରିବା ଲକ୍ଷରେ ଦେଶର ବିଭିନ୍ନ ସ୍ଥାନରେ ସେମାନେ ନେତୃତ୍ୱରେ ନଥିବା ୟୁନିୟନ ଗୁଡ଼ିକକ୍ଷେତ୍ରରେ ପାଲଟା ୟୁନିୟନମାନ ଗଢ଼ିବା ଆରମ୍ଭ କଲେ । ସି.ପି.ଆଇ. (ଏମ୍) ନେତୃତ୍ୱରେ ପରିଚାଳିତ ପ୍ରାୟ ୩୦୦ ୟୁନିୟନକୁ ଏ.ଆଇ.ଟି.ୟୁ.ସି.ର ଏଫିଲିଏସନରୁ ବଞ୍ଚିତ କରାଗଲା । ପ୍ରାୟ ୨୦୦ ଯାଏ ପାଲଟା ୟୁନିୟନମାନ ସେମାନେ ଗଠନ କଲେ । ଦୀର୍ଘ ୪ ବର୍ଷ ଯାଏ ରାଷ୍ଟ୍ରିୟ ସ୍ତରରେ ଏକଜୁଟ ଆନ୍ଦୋଳନ ଗଢ଼ି ତୋଳିବା ଚେଷ୍ଟା ଓ ଡାଙ୍ଗେ ନେତୃତ୍ୱ ଯୋଗେ ଏହାକୁ ବାଧା ପ୍ରଦାନ ଦ୍ୱାରା ଶ୍ରେଣୀ ସହଯୋଗ ନୀତି ଅନୁସରଣ ଅବ୍ୟାହତ ରହିଥିଲା । ଏମାନଙ୍କ ସହ ଏକତ୍ର କାମ କରିବା ଆଦୌ ସମ୍ଭବପର ହେଲା ନାହିଁ । ଡାଙ୍ଗେ ମଧ୍ୟ ସି.ପି.ଆଇ (ଏମ୍) ନେତୃତ୍ୱକୁ ଏ.ଆଇ.ଟି.ୟୁ.ସି ଛାଡ଼ି ଚାଲିଯିବା ଚାହିଁଲେ କାରଣ ସଂଗଠନରେ ସେ ଅପ୍ରତିଦ୍ୱନ୍ଦି ହେବାକୁ ଚାହିଁଥିଲେ । ଏପରିଭାବେ ଏ.ଆଇ.ଟି.ୟୁ.ସି. ଠାରୁ ବିଭାଜନ ଅପରିହାର୍ଯ୍ୟ ହୋଇ ପଡ଼ିଲା ।

ଏ.ଆଇ.ଟି.ୟୁ.ସିର ସାଧାରଣ ପରିଷଦରୁ ୩୨ ଜଣ ସଭ୍ୟ ବାହାରି ଆସି ୧୯୭୦ ସାଲରେ ଗୋଆ ଠାରେ ଅପ୍ରିଲ ୯ - ୧୦ ଦିନ ଏକ କନଭେନସନ ରେ ବିଭିନ୍ନ ରାଜ୍ୟ କମିଟି ଓ ବିଭିନ୍ନ କମିଟିର ସଭ୍ୟମାନଙ୍କ ସହ ସମବେତ ହେଲେ । ଏହି କନ୍‌ଭେନ୍‌ସନରେ କମ୍ରେଡ୍ ରଣଦିଭେ ସଭାପତିତ୍ୱ କରିଥିଲେ ଏବଂ ସେଠାରେ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଯେ :

"ଶ୍ରେଣୀ ସଚେତନ ଶ୍ରମିକମାନଙ୍କ ପକ୍ଷରୁ ଏବଂ ଯେଉଁମାନେ ଶ୍ରେଣୀ ସଂଗ୍ରାମକୁ ଆଗେଇ ନେବାକୁ ଓ ବିଭେଦର ଅବସାନ ଓ ଟ୍ରେଡ୍ ୟୁନିୟନମାନଙ୍କୁ ଏକଜୁଟ ପାଇଁ ଚେଷ୍ଟା ଚଳେଇଥିଲେ; ଏହାକୁ ହସ୍ତକ୍ଷେପକାରୀ (Dominant) ନେତୃତ୍ୱ ବିଫଳ କରିଦେଇଛନ୍ତି । ଏ.ଆଇ.ଟି.ୟୁ.ସି ଦ୍ୱାରା ଦୀର୍ଘକାଳ ବ୍ୟାପୀ ଅନୁସରଣ ହୋଇ ଆସିଥିବା ନୀତିକୁ ଏନେତୃତ୍ୱ ଅସ୍ୱୀକାର କରୁଛି । ଶ୍ରମିକ ସ୍ୱାର୍ଥ ସଂଶ୍ଳିଷ୍ଟ ସକଳ ପ୍ରଶ୍ନ ଉପରେ ତଥା ଗଣତାନ୍ତ୍ରିକ ପନ୍ଥାରେ ନିର୍ବାଚନ, ଆନୁପାତିକ ପ୍ରତିନିଧିତ୍ୱ ଓ ଶ୍ରମିକମାନଙ୍କ ଗଣତାନ୍ତ୍ରିକ ନିଷ୍ପତ୍ତି, ଏବଂ ନିର୍ବାଚିତ ସାଂଗଠନିକ ନୀତିକୁ କାର୍ଯ୍ୟକାରୀ କରାଯାଉ ନାହିଁ ।"

ପ୍ରସ୍ତାବରେ ପୁଣି ଉଲ୍ଲେଖ ଥିଲା ଯେ : "ଏତିକିରେ ସନ୍ତୁଷ୍ଟ ନ ହୋଇ ଏହି ପ୍ରଭାବଶାଳୀ ନେତୃତ୍ୱ ସେମାନଙ୍କ ୟୁନିୟନ ଗୁଡ଼ିକରେ ସଭ୍ୟ ସଂଖ୍ୟା ଅଧିକ କରି ଦେଖାଇଥିଲେ, ସଭ୍ୟ ସଂଖ୍ୟା ତନଖିକୁ ଗ୍ରହଣ କଲେ ନାହିଁ, ଏବଂ କୌଣସି ନିୟମ ଅନୁସରଣ ନ କରି କାଗଜପତ୍ର ରେକର୍ଡ଼ରେ ଜାଲ ୟୁନିୟନ ସବୁ ହିସାବକୁ ନେଇ ଥିଲେ । ଏହା ସେମାନେ ସଂଗଠନକୁ ନିଜ ଏକଛଟିଆ କବଳରେ ରଖିବା ପାଇଁ କରିଥିଲେ ।

"ଏହିପରିଭାବେ ସେମାନେ ସଂଗଠନକୁ ନିଜ ଅକ୍ତିଆରରେ ରଖି, ବିଭିନ୍ନ ସରକାରୀ କମିଟି ଗୁଡ଼ିକୁ, ତ୍ରିପାକ୍ଷୀକ କମିଟି ପାଇଁ, ମଜୁରୀ ବୋର୍ଡ଼, ରାଷ୍ଟ୍ରିୟ ଶ୍ରମ କମଶନର ଶିକ୍ଷଣ ଗ୍ରୁପ ଗୁଡ଼ିକରେ ଯେଉଁଠାରେ ସରକାର ଓ ମାଲିକ ପ୍ରତିନିଧିମାନେ ମଧ୍ୟ ସାମିଲ ହୋଇଥାନ୍ତି, ନିଜର ମରଜି ମୁତାବକ ପ୍ରତିନିଧି ପଠାଉଥିଲେ... ।"

୧୯୭୦ ମସିହା ମଇ ମାସ ୨୮ - ୩୧ ଯାଏ ଅନୁଷ୍ଠିତ ଗୋଆ କନଭେନସନ୍ କଲିକତାଠାରେ ନୂଆ ସର୍ବଭାରତୀୟ ଶ୍ରମିକ ସଂଗଠନ ଗଠନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲା । ସି.ଆଇ.ଟି.ୟୁର ଏହି ପ୍ରତିଷ୍ଠା ସମ୍ମିଳନୀରେ ଆଠ ଲକ୍ଷ ଶ୍ରମିକମାନଙ୍କ ୫୦୦୦ ପ୍ରତିନିଧି ଯୋଗ ଦେଇଥିଲେ । ଏହି ପ୍ରତିଷ୍ଠା ସମ୍ମିଳନୀର ଉଦ୍‌ଯାପନୀ ଉଦ୍‌ବୋଧନରେ ରଣଦିଭେ କହିଥିଲେ :

"ଆମେ ଏକ ନୂଆ ସଂଗଠନ ନୂଆ ଲାଇନ୍ ଭିତ୍ତିରେ ପ୍ରତିଷ୍ଠା କଲେ । ଆମେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ନୂତନ ଜୀବନ ସଂଚର ପାଇଁ ନିଷ୍ପତ୍ତି ଗ୍ରହଣ କରିଛେ । କିନ୍ତୁ ଏହି ଟ୍ରେଡ୍ ୟୁନିୟନ ଆନ୍ଦୋଳନର ପ୍ରତ୍ୟେକ ନେତା, ଆମ ମଧ୍ୟରୁ ସମସ୍ତେ, ଆମର ନିଜ ନିଜ ଚେତନାରେ ପରିବର୍ତ୍ତନ ଆଣିବାକୁ ହେବ । ପୁରୁଣା ଚେତନା ଓ କାମର ପୁରୁଣା ତରିକା ପରିତ୍ୟାଗ କରିବାକୁ ହେବ । ଏହା କରି ପାରିଲେ ହିଁ ଅନ୍ୟମାନଙ୍କ ସୁଧାରବାଦୀ ଲାଇନ୍ ବିରୁଦ୍ଧରେ ସଠିକ୍ ଲାଇନ ଅନୁସରଣ କରି ଆମେ ସଂଗ୍ରାମକୁ ଆଗେଇ ନେଇ ପାରିବା ।"

ଏହି ସମ୍ମିଳନୀରେ ରଣଦିଭେ ସଭାପତି ଓ ପି. ରାମମୂର୍ତ୍ତି ସାଧାରଣ ସମ୍ପାଦକ ନିର୍ବାଚିତ ହୋଇଥିଲେ । ପ୍ରତିଷ୍ଠା ସମ୍ମଳନୀର ସାଧାରଣ ସଭାରେ ପ୍ରାୟ ୧୦ ଲକ୍ଷ ଶ୍ରମିକ ଅଂଶ ଗ୍ରହଣ କରିଥିଲେ ।

ସି.ଆଇ.ଟି.ୟୁ ଗଠନରେ ଆତଙ୍କିତ ହୋଇ ତତ୍‌କାଳିନ ଶ୍ରମ ମନ୍ତ୍ରୀ ଖଦିଲକର ଆଇ.ଏନ୍.ଟି.ୟୁ.ସି, ଏ.ଆଇ.ଟି.ୟୁ.ସି ଓ ଏଚ୍.ଏମ୍.ଏସ୍‌କୁ ନେଇ ରାଷ୍ଟ୍ରିୟ କାଉନସିଲ (NCT) ଗଠନ କରିଥିଲେ । ରଣଦିଭେ ଏହି ଚେଷ୍ଟାକୁ ସମ୍ପୂର୍ଣ୍ଣ ଶ୍ରମିକବିରୋଧୀ ବୋଲି ଆଖ୍ୟା ଦେଇଥିଲେ ।

ରଣଦିଭେ ଅନ୍ୟାନ୍ୟ ଟ୍ରେଡ୍ ୟୁନିୟନମାନଙ୍କୁ ମିଶାଇ ଟ୍ରେଡ୍ ୟୁନିୟନ ମାନଙ୍କର ନୂଆ ଏକତା ମଞ୍ଚ ଗଠନ ପାଇଁ ଉଦ୍‌ଯୋଗ ଗ୍ରହଣ କରିଥିଲେ । ଅକ୍ଟୋବର ୧୯୭୨ ମସିହା, ୧ ରୁ ୨ ତାରଖ ଯାଏ ସି.ଆଇ.ଟି.ୟୁ ଓ ବିଭିନ୍ନ ରାଷ୍ଟ୍ରିୟ ଫେଡ଼େରେସନ୍‌ମାନଙ୍କୁ ନେଇ ୟୁନାଇଟେଡ଼ କାଉନ୍‌ସିଲ ଅଫ୍ ଟ୍ରେଡ଼ ୟୁନିୟନ (UCTU) ଗଠନ ହୋଇଥିଲା । ଜର୍ଜ ଫର୍ଣ୍ଣାଡ଼େଜ ଏହାର ଆବାହକ ନିର୍ବାଚିତ ହୋଇଥିଲେ । ଏହି ମଞ୍ଚରୁ ସମସ୍ତଙ୍କ ପାଇଁ ବୋନସ୍, ବାଧ୍ୟତାମୂଳକ ଜମା ଯୋଜନା, କେନ୍ଦ୍ର ସରକାରଙ୍କ ପେ' କମିସନ ରିପୋର୍ଟ ବିରୁଦ୍ଧରେ ଆନ୍ଦୋଳନକୁ ନେତୃତ ପ୍ରଦାନ କରାଯାଇଥିଲା । ଏ ସମସ୍ତ ବିଷୟ ଗୁଡ଼ିକ ଉପରେ ବି.ଟି.ଆର ଉପାଦେୟ ପ୍ରବନ୍ଧ ମାନ ଲେଖିଥିଲେ ।

ସରକାରୀ ମିଳିତ ମଞ୍ଚ ଏନ୍.ସି.ଟି.ୟୁ କିଛି କରୁନଥିବା ବେଳେ ୟୁ.ସି.ଟି.ୟୁ. ଶ୍ରମିକମାନଙ୍କ ପ୍ରତ୍ୟେକ ଜ୍ୱଳନ୍ତ ପ୍ରଶ୍ନ ଉପରେ ପ୍ରତିକ୍ରିୟା ପ୍ରକାଶ କରୁଥିଲା । ୧୯୭୫ ସାଲରେ ଆଇ.ଏନ୍.ଟି.ୟୁ.ସି. ଓ ଏ.ଆଇ.ଟି.ୟୁ.ସି. ୮.୩୦% ରୁ ୪%କୁ ବୋନସ୍ କାଟ୍ ନିଷ୍ପତ୍ତିକୁ ସମର୍ଥନ କରିଥିଲେ । ଡାଙ୍ଗେ ନାଗପୁର ଶ୍ରମିକ ସମାବେଶରେ କହିଲେ - "ଜରୁରୀ ଶାସନରୁ ବୋନସ୍ କ୍ଷତିର ଲାଭ ୧୦ ଗୁଣ ବେଶି ଅଟେ ।" ଏଚ.ଏମ୍.ଏସ୍, ଏନ୍.ସି.ଟି.ୟୁ. ପରିତ୍ୟାଗ କରିଥିଲା ଏବଂ ୟୁ.ସି.ଟି.ୟୁ ସହ ବୈଠକରେ ବସିଲା । ଏହି ମଞ୍ଚ ଜରୁରୀ ଶାସନ ଓ ବୋନସ୍ କାଟିବା ବିରୁଦ୍ଧରେ କାମ କରିଥିଲା । ରଣଦିଭେ ୟୁ.ସି.ଟି.ୟୁ. କାର୍ଯ୍ୟକଳାପରେ ଗଭୀର ରୁଚି ରଖୁଥିଲେ ଏବଂ ଏହାକୁ ଦିଗ୍‌ଦର୍ଶନ ଦେଉଥିଲେ । ରଣଦିଭେ ଜରୁରୀ ଶାସନ ବେଳେ ଅଣ୍ଡରଗ୍ରାଉଣ୍ଡରେ ରହି ଶ୍ରମିକ ଆନ୍ଦୋଳନକୁ ନେତୃତ୍ୱ ପ୍ରଦାନ କରିଥିଲେ ।

୧୯୭୪ର ରେଳ ଶ୍ରମିକ ଧର୍ମଘଟକୁ ପ୍ରତ୍ୟେହ ରଣଦିଭେ ପାଖେ ପାଖେ ରହି ନେତୃତ୍ୱ ଦେଇଥିଲେ । ରେଳବାଇ କ୍ଷେତ୍ରରେ NCCRS (ନେସନାଲ କୋ-ଅର୍ଡ଼ିନେସନ କମିଟି ଅଫ୍ ରେଲୱେମେନସ୍ ଷ୍ଟ୍ରଗଲ) ଗଠନ ଦ୍ୱାରା ଶ୍ରମିକମାନଙ୍କୁ ଐକ୍ୟବଦ୍ଧ ଧର୍ମଘଟ ଲଢ଼େଇ ବାଟରେ ନିଆଯାଇଥିଲା । କିନ୍ତୁ ଜର୍ଜ ଯେପରିଭାବେ ଧର୍ମଘଟ ପ୍ରତ୍ୟାହାର କରିନେଲେ ରଣଦିଭେ ଏହାକୁ ଅନୁଚିତ୍ ମନେ କରିଥିଲେ । ସରକାର ରେଳବାଇ ଶ୍ରମିକମାନଙ୍କ ଉପରେ ସାଙ୍ଘାତିକ ଦମନ ଚଳେଇଥିଲେ । ଏ ସମ୍ପର୍କରେ ରଣଦିଭେ ଲେଖିଥିଲେ :

"ଭାରତବର୍ଷରେ ରେଳବାଇ ଶ୍ରମିକ ଇତିହାସ କାଏମ କଲେ । ବିଗତ ତିନି ସପ୍ତାହଧରି ସେମାନଙ୍କ ବିରତ୍ୱପୂର୍ଣ୍ଣ ପ୍ରତିରୋଧ ସଂଗ୍ରାମ ଗଣ ଗିରଫଦାରୀ, ଗଣ ବହିଷ୍କାର ଏବଂ ସେମାନଙ୍କ ଉପରେ, ସେମାନଙ୍କ ପରିବାର ଓ ପିଲା ଛୁଆମାନଙ୍କ ଉପରେ ସଂନ୍ତ୍ରାସ ସତ୍ତ୍ୱେ ଆଗେଇଥିଲା ।" ସେ ସମସ୍ତ ଟ୍ରେଡ୍ ୟୁନିୟନମାନଙ୍କୁ ଏ ପରିପ୍ରେକ୍ଷୀରେ ଡାକରା ଦେଇ କହିଥିଲେ : "ଦେଶର ସମସ୍ତ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଓ ଜନସାଧାରଣ ଆଗେଇ ଆସି ରେଳବାଇ ଶ୍ରମିକ ପାଖରେ ଠିଆ ହେଉ ଏବଂ ସେମାନଙ୍କ ସଂଗ୍ରାମକୁ ନିଜର ସଂଗ୍ରାମ ଭାବେ ବିଚାର କରୁ ।"

ଦଣ୍ଡବିଧାନର ଶୀକାର ରେଳ ଶ୍ରମିକ ମାନଙ୍କ ଆଇନଗତ ସାହାଯ୍ୟ ସହ ସେମାନେ ପୁନଃ ନିଯୁକ୍ତି ନପାଇବା ଯାଏ ରଣଦିଭେ ସେମାନଙ୍କ ପାଖେ ପାଖେ ଥିଲେ । ସେମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଦେଶସାରା ଆନ୍ଦୋଳନ ଅଭିଯାନରେ ସାମିଲ ହୋଇଥିଲେ । ସେ ରେଳବାଇ କ୍ଷେତ୍ରରେ ଲୋକୋ-ରନିଂ ଷ୍ଟାଫ୍‌ଙ୍କ ସଂଗଠନ ସମ୍ପର୍କରେ ଅଧିକ ରୂଚି ରଖୁଥିଲେ ଏବଂ ଏହାକୁ ବାଟ କଢ଼େଇବା କାମ କରିଥିଲେ । ସେ ରେଳବାଇ ଶ୍ରମିକମାନଙ୍କ ସଂଗ୍ରାମକୁ ଶ୍ରମିକ ଶ୍ରେଣୀର ବିପ୍ଳବୀ ସଂଗ୍ରାମ ଭାବେ ବିଚାର କରିବା ଉପରେ ଜୋର ଦେଇଥିଲେ ।

ସି.ଆଇ.ଟି.ୟୁ ସଂଗଠନକୁ ଅସଲ ଅର୍ଥରେ ଶ୍ରମିକ ଆନ୍ଦୋଳନର ସମନ୍ୱୟକାରୀ ସଂଗଠନ, ଶ୍ରେଣୀ ବିରୋଧି ମତାଦର୍ଶ ବିରୁଦ୍ଧରେ ଆଦର୍ଶଗତ ସଂଗ୍ରାମ ପରିଚାଳନାର ହତିଆର ଭାବେ ଗଢ଼ିତୋଳିବା ପାଇଁ ରଣଦିଭେଙ୍କ ଲଗାତର ଚେଷ୍ଟା ଏହାର ଅଭ୍ୟୁଦୟ ଘଟେଇଥିଲା । ସି.ପି.ଆଇ (ଏମ୍) ଦଳର ବହୁ ଗୁରୁଦାୟିତ୍ୱ ତୁଲାଇବା ସାଙ୍ଗରେ ଟ୍ରେଡ୍ ୟୁନିୟନକୁ ନିୟମିତ ନେତୃତ୍ୱ ପ୍ରଦାନ ପାଇଁ ସମୟ ବାହାର କରୁଥିଲେ । ସି.ପି.ଆଇ (ଏମ୍) ଦଳର ଗୁରୁତ୍ୱପୂର୍ଣ୍ଣ ଦଲିଲ : ଟ୍ରାକ୍ସ ଅନ୍ ଟ୍ରେଡ୍ ୟୁନିୟନ ଫ୍ରଣ୍ଟ (୧୯୬୬) (୧୯୮୩) ପ୍ରସ୍ତୁତ କରିଥିଲେ । ସେଠରେ ସେ ସମାଜବାଦ ପ୍ରତିଷ୍ଠା ପାଇଁ ଶ୍ରମିକ ଶ୍ରେଣୀର ବିପ୍ଳବୀ ଭୂମିକା ଉପରେ ଜୋର ଦେଇଥିଲେ ।

ଯେତେବେଳେ ମୋରାଜି ଦେଶାଇ ସରକାର ଶିଳ୍ପ ସମ୍ପର୍କ ବିଲ୍ ଆଣିଲେ, ଏହା ବିରୁଦ୍ଧରେ ପ୍ରବଳ ସମାଲୋଚନା କରିଥିଲେ ଏବଂ ତାଙ୍କ ଲିଖିତ ଏକ ପୁସ୍ତିକାରେ ଏହାର ବିରୋଧପାଇଁ ଶ୍ରମିକ ଶ୍ରେଣୀକୁ ଡାକରା ଦେଇଥିଲେ । ୧୯୭୯ରେ ଏକ ରାଷ୍ଟ୍ରୀୟ କନ୍‌ଭେନସନ୍ ଏହି ବିଲ୍ ବିରୁଦ୍ଧରେ ସଂଗଠିତ ହେଲା । ଶ୍ରମିକମାନେ ବିପୁଳ ସଂଖ୍ୟାରେ ପାର୍ଲିୟାମେଣ୍ଟ ସାମନାରେ ବିକ୍ଷୋଭ କଲେ । ଶେଷରେ ସରକାର ଏ ବିଲ୍ ପ୍ରତ୍ୟାହାର କରିଥିଲେ ।

ସେତେବେଳେ ରଣଦିଭେ ନେସ୍‌ନାଲ କ୍ୟାମ୍ପେନ୍ କମିଟି ଅଫ୍ ଟ୍ରେଡ୍ ୟୁନିୟନସ୍ ଗଠନ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏହି ମଞ୍ଚରେ ଆଇ.ଏନ୍.ଟି.ୟୁ.ସି. ବ୍ୟତିତ ସମସ୍ତ କେନ୍ଦ୍ରିୟ ଟ୍ରେଡ୍ ୟୁନିୟନ ଓ ଫେଡ୍ରେରେସନ ମାନେ ସାମିଲ ହୋଇଥିଲେ । ୧୯୮୨ରେ ଏନ୍.ସି.ସି. ନେତୃତ୍ୱ ପ୍ରଥମ ସର୍ବଭାରତୀୟ ସାଧାରଣ ଧର୍ମଘଟ ସଂଗଠିତ ହୋଇଥିଲା ।

୧୯୭୯ରେ ରଣଦିଭେଙ୍କ ତତ୍‌ପରତାରେ ପ୍ରଥମ ସର୍ବଭାରତୀୟ ଶ୍ରମଜୀବୀ ମହିଳା ସମ୍ମିଳନୀ ଚେନ୍ନାଇ ଠାରେ ଅନୁଷ୍ଠିତ ହୋଇଥିଲା । ୧୯୭୮ରେ ହାଇଦ୍ରାବାଦ୍ ଠାରେ ମଧ ପ୍ରଥମ ରାଷ୍ଟ୍ରାୟତ ଶିଳ୍ପ ଶ୍ରମିକମାନଙ୍କ କେନ୍ଦ୍ରିୟ ସମନ୍ୱୟ ତଥା CPSTU ଗଠନ ହୋଇଥିଲା ।

ବିଗତ ୨୦ ବର୍ଷ ଧରି ସି.ଆଇ.ଟି.ୟୁ ସଭାପତି ରହିବା ଭିତରେ ସେ ଥରେ ମାତ୍ର ବିଦେଶ ଯାଇଥିଲେ । ହାନୋଇରେ ଅନୁଷ୍ଠିତ ଭିଏତ୍‌ନାମର ଟ୍ରେଡ୍ ୟୁନିୟନ ତୃତୀୟ କଂଗ୍ରେସରେ ୧୯୭୪ରେ ଯୋଗଦେଇଥିଲେ । ଅତୀତରେ ରୁମାନିୟାର କମ୍ୟୁନିଷ୍ଟ ପାର୍ଟି କଂଗ୍ରେସରେ ଯୋଗ ଦେବା ପାଇଁ ବାସପୁନେୟାଙ୍କ ସହ ବିଦେଶ ଯାଇଥିଲେ । ବିଦେଶ ଯାତ୍ରାର ଅନ୍ୟାନ୍ୟ ବହୁ ଅନୁରୋଧକୁ ସେ ଆମ ନିଜ ଦେଶରେ ଅନେକ କାମ ବାକି ରହିଛି କହି ଏଡ଼େଇ ଦେଉଥିଲେ ।

ବି.ଟି.ଆର ପାର୍ଟି ମୁଖପତ୍ର ପିପୁଲସ୍ ଡ଼େମୋକ୍ରେସୀ ଓ ସି.ଆଇ.ଟି.ୟୁ. ମୁଖପତ୍ର ୱାର୍କିଂ କ୍ଲାସରେ ବିସ୍ତାର ପୂର୍ବକ ଲେଖାମାନ ନିୟମିତ ଲେଖୁଥିଲେ । ରୋଗ ଶଯ୍ୟାରେ ଥାଇ ସୁଦ୍ଧା ଦୁର୍ଗାପୁରରେ ସଂଗଠିତ କାମ ପାଇବାର ଅଧିକାର ଉପରେ ଅନୁଷ୍ଠିତ କନ୍‌ଭେନସନ ପାଇଁ ଦିଗ ନିର୍ଦ୍ଦେଶନ ଦେଇ ପ୍ରବନ୍ଧ ଲେଖିଥିଲେ ।

ବି.ଟି. ରଣଦିଭେଙ୍କ ପାଖରେ ପହଞ୍ଚିବା ସହଜ ସୁଲଭ ଥିଲା । ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଓରିଟିକାଲ ପ୍ରବନ୍ଧ ଲେଖି ବସିବା ବେଳେ କେହି ସାଥୀ ପହଞ୍ଚିଲେ ସେ ତାଙ୍କ ସହ ଆଲୋଚନା କରୁଥିଲେ ଓ ପରାମର୍ଶ ଦେଉଥିଲେ । କଷ୍ଟକର ପରିସ୍ଥିତିକୁ ମୁକାବିଲା କରିବା ତାଙ୍କ ଅଭ୍ୟାସ ପାଲଟିଥିଲା । ସାଥୀ ମାନଙ୍କ ସହ ହସ ପରିହାସରେ କଥା ହେଉଥିଲେ । କଠିନ ପରିସ୍ଥିତି ସାମନାରେ ଥାଇ ସୁଦ୍ଧା ସାଥିମାନଙ୍କ ସହ ପ୍ରାଣ ଖୋଲା ହସ ହସୁ ଥିଲେ । ସେ ଯୁବ କମ୍ୟୁନିଷ୍ଟ ମାନଙ୍କୁ କହୁଥିଲେ :

"ଯିଏ କଠିନ ଅବସ୍ଥାକୁ ସାହାସର ସହ ମୁକାବିଲା କରି ପାରେନା, ସେ କମ୍ୟୁନିଷ୍ଟ ହୋଇ ପାରିବ ନାହିଁ ।"

ସାଦା ସରଳ ଜୀବନ ରଣଦିଭେଙ୍କ ଜୀବନର ବିଶେଷ କଥା ଥିଲା । ସେ କହୁଥିଲେ ତୁମେ ଆରାମ ସହ ଅଭ୍ୟସ୍ତ ହୋଇପଡ଼ିଲେ ଅଳସୁଆ ହୋଇ ପଡ଼ିବ ଏବଂ ବିପ୍ଲବୀ ଦାୟିତ୍ୱ ତୁଲାଇ ପାରିବ ନାହିଁ । ଯେଉଁ କମ୍ରେଡ଼ ବେଶି ନିଜ ଅସୁବିଧା କଥା କହୁଥିଲେ ସେ ତାଙ୍କ ଉପରେ ବିରକ୍ତ ହେଉଥିଲେ । ସେ ସାଧାରଣ ସାଥୀମାନଙ୍କ ସହ ଖୁବ୍ ଶୀଘ୍ର ଖେଳୁଆଳ ମନଭାବ ନେଇ ମିଶିଯାଇ ପାରୁଥିଲେ । ଏଣୁ ସାଥୀମାନେ ତାଙ୍କ ସହ ମନ ଖୋଲି କଥା ହୋଇ ପାରୁଥିଲେ ।

ତାଙ୍କ ବ୍ୟକ୍ତିଗତ ଜୀବନରେ ତାଙ୍କ ନିଜର କୌଣସି ସ୍ୱାର୍ଥ ନଥିଲା, ଯଦି କିଛି ଥିଲା ଏହା ଥିଲା ଶ୍ରମିକ ଶ୍ରେଣୀ ଓ ନିପୀଡ଼ିତ ମଣିଷ ମାନଙ୍କ ସ୍ୱାର୍ଥ । ତେଣୁ ଶ୍ରମିକ ଶ୍ରେଣୀର ଚରମ ଲକ୍ଷ୍ୟ ଆଡ଼େ ଯିବା ବେଳେ ସେ ବେଳେ ବେଳେ ତରବର ହୋଇ ପଡୁଥିଲେ । ୧୯୮୯ ଠାରୁ ବି.ଟି.ଆରଙ୍କ ସ୍ୱାସ୍ଥ୍ୟରେ ଅବନତୀ ଆରମ୍ଭ ହେଲା । ଏହା ସତ୍ତ୍ୱେ ସେ ସୀମା ଭିତରେ ସଦା ସର୍ବଦା ସକ୍ରୀୟ ରହିଥିଲେ । କାମ କରିବା ଅଧିକାର ଉପରେ ଲେଖାଟି ବସ୍ତୁତଃ ମୃତ୍ୟୁ

ଶଯ୍ୟାରେ ପଡ଼ି ଲେଖିଥିଲେ । ସେ ସୋଭିଏତ ୟୁନିୟନର ଘଟଣାବଳୀ, କିପରି ଶ୍ରମିକ ଶ୍ରେଣୀ ଦୁର୍ବଳ ପାଲଟୁଛି, ସେ ବିଷୟରେ ଲେଖାମାନ ଲେଖିଥିଲେ ।

ଦିଲ୍ଲୀରେ ଥିବା ବେଳେ ତା'ଙ୍କ ଅବସ୍ଥା ଅଧିକ ଖରାପ ହୋଇପଡ଼ିଥିଲା । ଡାକ୍ତରୀ ପରୀକ୍ଷାରୁ କ୍ୟାନସର ଗୁରୁତ୍ୱର ଅବସ୍ଥାରେ ଥିବା ଜଣାପଡ଼ିଥିଲା । ୧୯୯୦ ଜାନୁୟାରୀ ମାସରେ ବମ୍ବେର ଟାଟା ମେମୋରିୟାଲ୍ କ୍ୟାନସର ହସପିଟାଲ୍‌ରେ ଚିକିତ୍ସା ଆରମ୍ଭ କରାଯାଇଥିଲା । ହସପିଟାଲ୍ ବିଛଣାରେ ପଡ଼ିଥାଇ ମଧ୍ୟ ଦେଶର ରାଜନୈତିକ ଘଟଣାବଳୀ ସମ୍ପର୍କରେ ତାଙ୍କୁ ଦେଖିବାକୁ ଯାଉଥିବା ସାଥିମାନଙ୍କ ଠାରୁ ପଚାରି ବୁଝୁଥିଲେ । ପାର୍ଟି ଓ ଶ୍ରମିକ ଶ୍ରେଣୀ ପ୍ରତି ତାଙ୍କ ଆନୁଗତ୍ୟ କେତେ ଏହା ଦେଖିବାକୁ ଯାଉଥିବା ସାଥୀ ମାନଙ୍କୁ ଅଭିଭୂତ କରିଥିଲା । ବିମଳ ରଣଦିଭେ ଓ ପୁତ୍ର ଉଦୟ ଲଗାତାର ତାଙ୍କ ପାଖେ ପାଖେ ଥିଲେ ।

ଦିନକୁ ଦିନ ତାଙ୍କ କଷ୍ଟ ବଳିପଡୁଥିଲା କିନ୍ତୁ ସେ ସାହସର ସହ ସବୁ କଷ୍ଟକୁ ସହିଯାଉଥିଲେ । ନିଜ ଶେଷ ସମୟକୁ ସେ ନିଜେ ସାହାସର ସହ ମୁକାବିଲା କରିଥିଲେ ।

ମୁଁ ହସପିଟାଲ ଯାଇ ତାଙ୍କ ଶେଷ ସମୟ ବେଳେ ଦେଖା କରିବାକୁ ଚାହିଁଥିଲି । ସେତେବେଳେ ଭିତରକୁ ଯିବାପାଇଁ କାହାରିଙ୍କୁ ଅନୁମତି ଦିଆଯାଉନଥିଲା । ଡାକ୍ତରଙ୍କ ଠାରୁ ବିଶେଷ ଅନୁମତି ନେଇ ପ୍ରାୟ ଏକ ମିନିଟ୍ ପାଇଁ ତାଙ୍କ ପାଖକୁ ଯାଇଥିଲି । ମୁଁ ତାଙ୍କ ପାଖରେ ପହଞ୍ଚିବା ପରେ ସେ ଆଖି ଖୋଲି ମୋ ଆଡ଼େ ଅନାଇଲେ ଏବଂ ଅଳ୍ପ ଟିକେ ହସିଥିଲେ । ଏହା ତାଙ୍କ ସହଜ ସୁଲଭ ହସନଥିଲା । ସେ କିଛି କହିବାକୁ ଚାହୁଁଥିଲେ କିନ୍ତୁ କହିପାରିଲେ ନାହିଁ । ମୋ ସମୟ ପୁରିଗଲା, ଭାରାକ୍ରାନ୍ତ ମନ ନେଇ ମୁଁ ରୁମ୍‌ରୁ ବାହାରି ଆସିଥିଲି ।

ଶ୍ରମିକ ଶ୍ରେଣୀ ମହନ୍ ନେତା ରଣଦିଭେ ୬ ଅପ୍ରିଲ ୧୯୯୦ ଦିନ ପ୍ରାଣ ତ୍ୟାଗ କରିଥିଲେ । ତାଙ୍କ ମୃତ୍ୟୁ ଖବର ଦେଶସାରା ଖେଳି ଯାଇଥିଲା । ମୃତ୍ୟୁପରେ ସର୍ବତ୍ର ବିଷାଦ ଛାୟା ଘୋଟି ଯାଇଥିଲା । ପୁଂଜିବାଦ ବିରୁଦ୍ଧରେ ସଂଗ୍ରାମଶୀଳ ମହାନ୍ ଯୋଦ୍ଧାଙ୍କୁ ଶ୍ରଦ୍ଧାଞ୍ଜଳି ଜଣେଇବା ପାଇଁ ସମଗ୍ର ଦେଶରୁ ନେତାମାନେ ବମ୍ବେ ଜନଶକ୍ତି ଅଫିସ୍‌ରେ ଶେଷଯାତ୍ରା ପାଇଁ ରଖାଯାଇଥିବା ତାଙ୍କ ମର ଶରୀର ପାଖରେ ପହଞ୍ଚି ଶ୍ରଦ୍ଧାଞ୍ଜଳୀ ଅର୍ପଣ କରିଥିଲେ ।

ବି.ଟି. ରଣଦିଭେ ସବୁଦିନ ପାଇଁ ବିପ୍ଳବୀ ଟ୍ରେଡ଼ ୟୁନିୟନର ସମୃଦ୍ଧ ପରମ୍ପରା ତାଙ୍କ ପଛରେ ଛାଡ଼ି ଚାଲିଗଲେ, ଏହା ଆଗକୁ ଆମପାଇଁ ଦୀଗଦର୍ଶନ ଭଳି କାମ କରିବ ।

## ସଂଶୋଧନବାଦ ଓ ବାମପନ୍ଥୀ ବିଚ୍ୟୁତି ବିରୁଦ୍ଧରେ ସଂଗ୍ରାମ

ସଂଶୋଧନବାଦ ଓ ବାମପନ୍ଥୀ ବିଚ୍ୟୁତି ବିରୁଦ୍ଧରେ ବି.ଟି.ଆର ସଦା ସର୍ବଦା ସତର୍କ ରହିବାକୁ କହୁଥିଲେ । ଏହି ଉଭୟ ବିଚ୍ୟୁତି ସଦାବେଳେ ପୁଞ୍ଜିବାଦକୁ ସାହାଯ୍ୟ କରେ ଏବଂ ବିପ୍ଳବୀ ଆନ୍ଦୋଳନକୁ କ୍ଷତିଗ୍ରସ୍ତ କରିଥାଏ । ଉଭୟ ବିଚ୍ୟୁତି ମାର୍କ୍ସବାଦୀ ଆଦର୍ଶବାକ୍ୟ ବ୍ୟବହାର କରିଥାନ୍ତି କିନ୍ତୁ ଶ୍ରେଣୀ ସଂଗ୍ରାମକୁ ଭିତରୁ ରହି ଆଘାତ କରିଥାନ୍ତି । ଏହି ବିଚ୍ୟୁତି ଗୋଟିଏ

ମୁଦ୍ରାର ଦୁଇଟି ପାର୍ଶ୍ୱ ଅଟେ ଏବଂ ଏହା ବିରୁଦ୍ଧରେ ଲଗାତର ସଂଗ୍ରାମ ଚଳେଇ ନରଖିଲେ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ଆଗେଇ ପାରିବ ନାହିଁ ।

ସଂଶୋଧନବାଦ ଓ ବାମ ବିଚ୍ୟୁତି ବିରୁଦ୍ଧରେ ଲାଗାତର ଆଦର୍ଶଗତ ଓ ସାଂଗଠନିକ ଲଢ଼େଇ କରି ଶ୍ରମିକ ଆନ୍ଦୋଳନକୁ ଏହି ବିଚ୍ୟୁତି ଫଳରୁ ଉଦ୍ଧାର କରିବା କ୍ଷେତ୍ରରେ ବି.ଟି. ରଣଦିଭେ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବେ । ସ୍ୱାଧୀନତା ପରେ ଏ.ଆଇ.ଟି.ୟୁ.ସି.ର ଏକ ବଡ଼ ଅଂଶ ସଂଶୋଧନବାଦର ଶୀକାର ପାଲଟିଥିଲା । ତେଣୁ ବିଘଟନ ପରେ ମଧ୍ୟ ଟ୍ରେଡ଼ ୟୁନିୟନ ଆନ୍ଦୋଳନର ଏକ ବଡ଼ ଅଂଶ ଓ ସଂଗଠନ, ସଂଶୋଧନବାଦୀ ପ୍ରଭାବ ଭିତରେ ରହିଗଲେ । କିନ୍ତୁ ଏ.ଆଇ.ଟି.ୟୁ.ସିର ପ୍ରଭାବଶାଳୀ ନେତୃତ୍ୱ ୧୯୬୦ ଦଶକ ଶେଷ ଆଡ଼କୁ ରାଜନୈତିକ ଭାବେ ସଂଶୋଧନବାଦୀ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବାରୁ ସମଗ୍ର ଟ୍ରେଡ଼ ୟୁନିୟନ ଆନ୍ଦୋଳନ ବିପଦରେ ପଡ଼ିଥିଲା । ଠିକ୍ ସେତେବେଳେ ରଣଦିଭେ ସଂଶୋଧନବାଦ ବିରୁଦ୍ଧରେ ପ୍ରଚଣ୍ଡ ସଂଗ୍ରାମ ଆରମ୍ଭ କଲେ । ନିଜ ଚାରିପଟେ ବହୁ ନିଷ୍ଠାପର, ତ୍ୟାଗପୁତ ଚେତନଶୀଳ ଓ ବହୁ ସଂଗ୍ରାମରେ ପରିକ୍ଷୀତ ଶ୍ରମିକନେତା ମାନଙ୍କୁସମବେତ କରିଥିଲେ ।

ଉପଯୁକ୍ତ ପ୍ରଭାବ ସୃଷ୍ଟି କଲାଭଳି ଆନ୍ଦୋଳନ ପାଇଁ ରାଜନୈତିକ ସ୍ତରରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନରେ ସଂଶୋଧନ ବାଦୀ ଓ ବିପ୍ଳବୀ ଦୃଷ୍ଟିଭଙ୍ଗୀକୁ ଚିହ୍ନଟ କରିବାକୁ ହେବ । ମାର୍କ୍ସବାଦ - ଲେନିନ୍‌ବାଦର ବିପ୍ଳବୀ ଶିକ୍ଷାକୁ ଏ ପାର୍ଥକ୍ୟ ଚିହ୍ନଟ ପାଇଁ ବ୍ୟବହାର କରିବା କ୍ଷେତ୍ରରେ ରଣଦିଭେ ପ୍ରଥମ ଲୋକଥିଲେ - "ନୀତିଦିନର ହିତ ରକ୍ଷା କରିବା ସହ ଟ୍ରେଡ଼ ୟୁନିୟନକୁ ବିପ୍ଳବୀ ଲକ୍ଷ ନେଇ ତଥା ଏକ ଶୃଙ୍ଖଳିତ, ବିପ୍ଳବୀ ସମାଜବାଦୀ ଚେତନାରେ ଶାଣିତ ଚେତନଶୀଳ ଶ୍ରମିକ ଶ୍ରେଣୀ ସଂଗଠନ ଭାବେ ସଂଗଠିତ ହେବାକୁ ପଡ଼ିବ ।".... "ମାର୍କ୍ସବାଦୀ - ଲେନିନବାଦୀ ଦୃଷ୍ଟି ଭଙ୍ଗୀରେ ଦୁଇଟି ପରସ୍ପର ମୁହାଁ ମୁହିଁ ହୋଇଥିବା ଶ୍ରେଣୀମାନଙ୍କ ମଧ୍ୟରେ ମହାନ ଶ୍ରେଣୀ ଯୁଦ୍ଧର ଅଂଶ ଭାବେ ଦାବି ପାଇଁ ଲଢ଼େଇ ଭାବେ ଲଢ଼ିବାକୁ ପଡ଼ିଥାଏ । ତେଣୁ ନଗଦ ଓ ରାଜନୈତିକ କିମ୍ବା ଶେଷ ଲଢ଼େଇ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ସମ୍ପର୍କକୁ ମନେରଖିବାକୁ ହେବ ।" କିନ୍ତୁ ସଂଶୋଧନବାଦୀ ମାନେ ଶ୍ରମିକ ଶ୍ରେଣୀ ଓ ତାର ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ସମ୍ପୂର୍ଣ୍ଣଭାବେ ଆର୍ଥିକ ଲଢ଼େଇ ଗଣ୍ଡି ଭିତରେ ଆବଦ୍ଧ ରଖି ସମାଜବାଦୀ ପ୍ରତିଷ୍ଠା ଓ ପୁଞ୍ଜିପତି ହାତରୁ କ୍ଷମତା ଛଡ଼େଇ କ୍ଷମତା ଦଖଲ ଲକ୍ଷ୍ୟରୁ ନିଜକୁ ଦୁରେଇ ନେଇଥାନ୍ତି ।

ଏହା ହିଁ ସଂଶୋଧନବାଦୀ - ସୁଧାରବାଦୀ ଓ ସୁବିଧାବାଦୀ ଦୃଷ୍ଟିଭଙ୍ଗୀ - ପ୍ରଥମେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ଓ ଦ୍ୱିତୀୟଟି ଲକ୍ଷ୍ୟ ସମ୍ପର୍କରେ ବିପ୍ଳବୀ ଦୃଷ୍ଟି ଭଙ୍ଗୀକୁ ନେଇ ପାର୍ଥକ୍ୟକୁ ଦର୍ଶାଇ ଥାଏ ।

ରଣଦିଭେଙ୍କ ସମସ୍ତ ଲେଖା ଓ ଭାଷଣ ୱାର୍କିଂ କ୍ଲାସରେ ଓ ଅନ୍ୟାନ୍ୟ ପତ୍ରିକାରେ ପ୍ରକାଶ ପାଉଥିଲା । ପ୍ରତ୍ୟେକ ସମ୍ମିଳନୀରେ ସଭାପତି ଉଦ୍‌ବୋଧନ ଗୁଡ଼ିକରେ ସେ ବିପ୍ଳବୀ ଟ୍ରେଡ଼

ୟୁନିୟନର ନୀତିକୁ ବୟାନ କରୁଥିଲେ, ଏବଂ ଟ୍ରେଡ଼ ୟୁନିୟନ ସାମନାରେ ଥିବା ପ୍ରଶ୍ନ, ବାସ୍ତବ ସ୍ଥିତିର ବିଚାର ସହ କର୍ତ୍ତବ୍ୟ ପ୍ରତି ନିର୍ଦ୍ଦେଶମାନ ରହୁଥିଲା । ଏହା ଶ୍ରମିକ ଶ୍ରେଣୀ ଆନ୍ଦୋଳନ ପାଇଁ ମହତ୍ୱପୂର୍ଣ୍ଣ ଶିକ୍ଷା ଓ ପରମ ଅବଦାନ ଥିଲା ।

ବିପ୍ଳବୀ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ପାଇଁ ସଂଗ୍ରାମ ଯାହା ଏ.ଆଇ.ଟି.ୟୁ.ସି. ଭିତରେ ହିଁ ଆରମ୍ଭ ହୋଇଥିଲା ଏବଂ ଏହା କିପରିଭାବେ ସି.ଆଇ.ଟି.ୟୁ ପ୍ରତିଷ୍ଠା ଭିତର ଦେଇ ପରିପ୍ରକାଶ ହେଲା, ଏହା ପ୍ରଥମରୁ ଆଲୋଚନା କରାଯାଇଛି । ସି.ଆଇ.ଟି.ୟୁ ସମ୍ବିଧାନ ମଧ୍ୟରେ ହିଁ ମାର୍କ୍ସବାଦୀ ଲେନିନବାଦୀ ଦୃଷ୍ଟିଭଙ୍ଗୀ, ଏହାର 'ଲକ୍ଷ୍ୟ ଓ କାର୍ଯ୍ୟ ନିର୍ଦ୍ଦେଶ' ଅଧ୍ୟାୟ ମଧ୍ୟରେ ସନ୍ନିବେଶିତ ହୋଇଛି ।

କଲିକତାଠାରେ ସି.ଆଇ.ଟି.ୟୁ ପ୍ରତିଷ୍ଠା ସମ୍ମିଳନୀରେ (୧୯୭୦) ରଣଦିଭେ ତାଙ୍କ ଉଦଯାପନୀ ଉଦ୍‌ବୋଧନ ବେଳେ କହିଥିଲେ :

"ସଂଶୋଧନବାଦୀ ଲାଇନ ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ବିଭେଦଗ୍ରସ୍ତ କରିଛି ଏବଂ ଆମର ପରମ କର୍ତ୍ତବ୍ୟ ହେଉଛି ଏହି ବିଭେଦ ଊର୍ଦ୍ଧ୍ୱକୁ ଯାଇ ଲଢୁଆ ଶ୍ରମିକ ଶ୍ରେଣୀକୁ ସଂଗଠିତ କରିବା । ଏଣୁ ଏକତା ପ୍ରତିଷ୍ଠାର ଲଢ଼େଇ ଏକ ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ । ଏହାକୁ ଅତ୍ୟନ୍ତ ନିପୁଣଭାବେ ଓ ଅଧିକ ଦୃଢ଼ତା ସହ ଏପରି ଜଗିରଖି କରିବା ଦରକାର ଯେପରି ମୁଳ ଚାଲ ବେଳେ ବିଭ୍ରାନ୍ତକାରୀ ବ୍ୟକ୍ତି ମାନେ ଏକଘରକିଆ ହୋଇପାରିବେ । ସେତେବେଳେ ହିଁ ଆମ ସଂଗଠନ ଶ୍ରମିକ ଶ୍ରେଣୀର ଲଢ଼େଇ କ୍ଷମତାକୁ ବୃଦ୍ଧି କରିପାରିବ । ଏହା ଏକ ସକ୍ରୀୟ ସଂଗଠନ ଭାବେ ଚେତନାର ସ୍ତରକୁ ବିକାଶ-ଘଟେଇ ଇତିହାସ ଦ୍ୱାରା ନ୍ୟସ୍ତ ଦାୟିତ୍ୱ ପାଳନ ପାଇଁ ରାଜନୈତିକ କର୍ତ୍ତବ୍ୟ ପୁରଣ କରିପାରିବ ।"

ଉଦ୍‌ବୋଧନରେ ସତର୍କ କରେଇ କହିଥିଲେ :

"କ୍ରୋଧ ବଶତଃ କେତେ ଜଣ ହୁଏତ ତାଙ୍କର ସମସ୍ତ ଆକ୍ରମଣ ସଂଶୋଧନବାଦ ଉପରେ କେନ୍ଦ୍ରିଭୂତ କରିବେ ଏବଂ ମୁଖ୍ୟ ଶତ୍ରୁଙ୍କୁ ଭୁଲିଯିବେ । ଏହି ଭୁଲ ଅକ୍ଷମଣୀୟ ଅଟେ । ଏହି ପ୍ରକାର ଭୁଲ ସଂଶୋଧନବାଦୀମାନେ ଆମକୁ ଆକ୍ରମଣ କଲାବେଳେ କରିଥାନ୍ତି । ଆମେ କ'ଣ ସେ ପ୍ରକାର ଭୁଲ କରିବା ? ଆମେ ସଂଶୋଧନବାଦ ବିରୁଦ୍ଧରେ ଲଢ଼େଇ କରୁଛୁ, ସେ ଝୁଙ୍କକୁ ବିରୋଧ କରୁଛୁ, କାରଣ ଏହା ଫଳରେ ଆମ ଶ୍ରେଣୀର ସାଧାରଣ ସଂଗ୍ରାମ ବାଧାପ୍ରାପ୍ତ ହେଉଛି ।"

ରଣଦିଭେ ଆମର କାମ କରିବାର ତରିକାକୁ ବଦଳାଇବା ଉପରେ ଜୋର ଦେଇଥିଲେ :

"ଡାଙ୍ଗେଙ୍କ ଲାଇନ୍ ସଂଶୋଧନବାଦୀ ଓ ସୁବିଧାବାଦୀ ଜାଣି ଆମେ ସଠିକ୍ ଭାବେ ତାକୁ ପ୍ରତ୍ୟାଖ୍ୟାନ କରିଛୁ ଓ ନୂଆ ସଂଗଠନଟିଏ ଗଢ଼ିଲୁ । କିନ୍ତୁ କାମ କରିବା ତରିକା ଯଦି ସେହିପରି ପୁରୁଣା ହୋଇ ରହେ, ତେବେ ଏହି ଲଢ଼େଇ ଆନ୍ତରିକତାବିହିନ ଓ ଅସଲ ହେବ ନାହିଁ; ତେଣୁ ଆମକୁ ଏପରି ଏକ ଅସଲ ଲଢ଼େଇ ପାଇଁ ଆଗେଇବାକୁ ପଡ଼ିବ ।"

ନିତିବହିନ ଏକତା, ମିଥ୍ୟା ଏକତା ଓ ଅସଲ ଅର୍ଥରେ ଏକତା ନୁହେଁ ବୋଲି ରଣଦିଭେ ସତର୍କ କରାଇ କହିଥିଲେ :

"ସଂଶୋଧନବାଦୀ କାର୍ଯ୍ୟକଳାପ ସହ କୌଣସି ପ୍ରକାର ସାଲିସର ପ୍ରଶ୍ନ ଉଠୁନାହିଁ; ସଂଶୋଧନବାଦୀମାନଙ୍କ ଅନ୍ତର୍ଘାତୀକାମ, ଏକତା ନାଁରେ ଶ୍ରମିକ ଶ୍ରେଣୀକୁ ଧୋକା ଦେବା କାମ ସହ ସାଲିସର ପ୍ରଶ୍ନ ଉଠୁନାହିଁ ।"

ସେ ବାମପନ୍ଥୀ ବିଚ୍ୟୁତି ପ୍ରତି ମଧ୍ୟ ସମାନଭାବେ ସତର୍କ କରେଇଥିଲେ । ତାଙ୍କ ପାଇଁ ମାର୍କ୍ସବାଦ ଏକ ସତତ୍ ବିକାଶ ଲାଭ କରୁଥିବା ବିଜ୍ଞାନ ଥିଲା, ତେଣୁ ସଦାସର୍ବଦା ସେ ସାମାଜିକ ଘଟଣାବଳୀ କ୍ଷେତ୍ରରେ ପରିବର୍ତ୍ତନକୁ ଲକ୍ଷ୍ୟକରି ଏହା ଅନୁଯାୟୀ ଉପଯୁକ୍ତ କୌଶଳ ଗ୍ରହଣ ଉପରେ ଜୋର ଦେଉଥିଲେ । ନକ୍ସଲମାନଙ୍କ ବାମ ବିଚ୍ୟୁତି ତଥା ଯେଉଁମାନେ ଜନସାଧାରଣଙ୍କୁ ଗଣଜାଗରଣ ପାଇଁ ପ୍ରସ୍ତୁତ ନକରି ଦୁଃସାହସିକ ଲଢ଼େଇ ଚଳେଇଥାନ୍ତି, ଏହାକୁ ସେ ତୀବ୍ର ନିନ୍ଦା କରିଥିଲେ । ନକ୍ସଲମାନଙ୍କ ଫମ୍ପା ସ୍ଲୋଗାନର ଶିକାର ନ ପାଲଟିବା ପାଇଁ ଶ୍ରମିକ ଶ୍ରେଣୀକୁ ସତର୍କ କରିଥିଲେ । ସେମାନଙ୍କ ତଡ଼ିତ୍ ବିପ୍ଳବ ମେହନତୀ ମଣିଷମାନଙ୍କ ଚେତନାର ସ୍ତରକୁ ବିଚାରକୁ ନିଏ ନାହିଁ ଏବଂ ପୁଞ୍ଜିବାଦ ବ୍ୟବସ୍ଥାର ଉତ୍ଖ୍ୟାତ ନିମନ୍ତେ ଚରମ ସଂଗ୍ରାମ ଆଡ଼େ ନେବା ପାଇଁ ଚେତନା ବୃଦ୍ଧି ଦୀଗରେ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରେ ନାହିଁ ।

## ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ

ଶ୍ରମିକଶ୍ରେଣୀ ଆନ୍ଦୋଳନରେ ସାମ୍ରାଜ୍ୟବାଦର ଭୂମିକାକୁ କସ୍ମିନକାଳେ ନଜର ଏଡ଼େଇ ଦେବା ଚଳିବ ନାହିଁ । ସାମ୍ରାଜ୍ୟବାଦୀମାନଙ୍କ ଯାବତୀୟ ଷଡ଼ଯନ୍ତ୍ର ବିରୁଦ୍ଧରେ ଶ୍ରମିକ ଶ୍ରେଣୀକୁ ସଦା ସର୍ବଦା ସଂଗ୍ରାମ ଚଳେଇବାକୁ ହେବ । ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ ବି.ଟି. ରଣଦିଭେଙ୍କ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଦିଗ ଅଟେ ।

ସମାଜବାଦୀ ଦୁନିଆ ବିରୁଦ୍ଧରେ ସାମ୍ରାଜ୍ୟବାଦୀମାନଙ୍କ ଷଡ଼ଯନ୍ତ୍ର ପ୍ରତି ରଣଦିଭେ ବାରମ୍ବାର ଶ୍ରମିକ ଶ୍ରେଣୀର ଧ୍ୟାନ ଆକର୍ଷଣ କରାଉଥିଲେ । ସମାଜବାଦୀ ସଫଳତାକୁ ରକ୍ଷା କରିବା ପାଇଁ ଶ୍ରମିକ ଶ୍ରେଣୀର ପ୍ରତିରୋଧକୁ ଦୃଢ଼ ଓ ଶକ୍ତିଶାଳୀ କରିବା ପାଇଁ କହୁଥିଲେ । ତାଙ୍କର "ସମାଜବାଦୀ ବିଶ୍ୱ ବିରୁଦ୍ଧରେ ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ରକୁ ପରାସ୍ତ କର" ଲେଖାରେ ସେ ଉଲ୍ଲେଖ କରିଥିଲେ

"ପୁଞ୍ଜିବାଦ ହରାଇଥିବା ଅଞ୍ଚଳ ଫେରି ପାଇବା ପାଇଁ ଆମେରିକା ସାମ୍ରାଜ୍ୟବାଦ ଯୁଦ୍ଧ ଆରମ୍ଭ କରିବା ପାଇଁ ପ୍ରସ୍ତୁତ ହେଉଛି । ହିଟଲରଙ୍କ ପଦାଙ୍କ ଅନୁସରଣ କରୁଛି ରିଗାନ । ତାଙ୍କୁ କେବଳ ବ୍ରିଟେନ ସମର୍ଥନ କରୁଛି ଯଦିଓ ଅନ୍ୟ କେତେକ ଦେଶ ଦୋ ଦୋ ପାଞ୍ଚ ଅବସ୍ଥାରେ ଅଛନ୍ତି । କିନ୍ତୁ ଏହି ଆସନ୍ନ ଯୁଦ୍ଧ ହେଉଛି ଅସଲ ବିପଦ ଏବଂ ଶ୍ରମିକ ଶ୍ରେଣୀକୁ ଏ ବିପଦର ମୁକାବିଲା କରିବାକୁ ପଡ଼ିବ । ସେମାନେ ବିଶ୍ୱକୁ ଲହୁ ଲୁହାଣ କରିବାକୁ ବସିଛନ୍ତି । ନାହିଁ ନ

ଥିବା ବିନାଶ ସହ ଲକ୍ଷ ଲକ୍ଷ ମଣିଷଙ୍କୁ ସେମାନେ ସଂହାର କରିବେ । କ'ଣ ପାଇଁ ସେମାନେ ଏକଥା କରିବାକୁ ଯାଉଛନ୍ତି ? ସମାଜବାଦର ସମ୍ପୂର୍ଣ୍ଣ ବିଲୋପ ହେଉଛି ଆମେରିକାର ବିଶ୍ୱବ୍ୟାପୀ ଲକ୍ଷ୍ୟ - ବିଶ୍ୱକୁ ପାଦତଳେ ରଖିବା ଓ ହୁକୁମ ଚଳେଇବା ହେଉଛି ଅସଲ ମତଲବ ।"

ବି.ଟି. ରଣଦିଭେ ବିଶ୍ୱର ସମସ୍ତ ଜାତୀୟ ମୁକ୍ତି ସଂଗ୍ରାମ ବିଷୟରେ ଏବଂ ଏଥିପ୍ରତି ପୂର୍ଣ୍ଣ ସମର୍ଥନ ଜଣେଇ ବିସ୍ତାର-ପୂର୍ବକ ଲେଖାମାନ ଲେଖିଥିଲେ । ବିଶ୍ୱର ସବୁଠାରୁ ଶକ୍ତିଶାଳୀ ସାମରିକ ଶକ୍ତି ବିରୁଦ୍ଧରେ ଭିଏତ୍‌ନାମର ମୁକ୍ତି ସଂଗ୍ରାମ ଓ କ୍ୟୁବା ଜନଗଣଙ୍କର ସାମ୍ରାଜ୍ୟବାଦୀ ଆମେରିକାର ଅବରୋଧ ଓ ବ୍ଲାକମେଲ ବିରୁଦ୍ଧରେ ସାହାସିକ ପ୍ରତିରୋଧ ସଂଗ୍ରାମ, ପାଲେଷ୍ଟାଇନ୍ ଜନଗଣଙ୍କ ଭୁଇଁ ଉପରେ ଇଜ୍‌ରାଇଲର ଜବର ଦଖଲ ବିରୁଦ୍ଧରେ ସଂଗ୍ରାମ ଏବଂ ବର୍ଣ୍ଣବିଦ୍ୱେଷ ବିରୋଧୀ ଦକ୍ଷିଣ ଆଫ୍ରିକା ଜନଗଣଙ୍କ ସଂଗ୍ରାମ ତାଙ୍କ ଜୀବନକାଳ ଭିତରେ ଘଟିଥିବା ସାମ୍ରାଜ୍ୟବାଦ ବିରୋଧି ଔପନିବେଶ ବିରୋଧୀ ମୁକ୍ତି ସଂଗ୍ରାମର ଘଟଣାବଳୀ ଗୁଡ଼ିକ ତାଙ୍କ ବିଭିନ୍ନ ବିସ୍ତାରପୂର୍ବକ ଲେଖାରେ ସ୍ଥାନ ପାଇଥିଲା ।

ରଣଦିଭେଙ୍କ ପାଇଁ ସାମ୍ରାଜ୍ୟବାଦୀ ବିସ୍ତାରବାଦୀ ନୀତି ବିଶ୍ୱ ପୁଞ୍ଜିବାଦର ଜଘନ୍ୟତମ ପରିପ୍ରକାଶ ଏବଂ ଏହା ବିରୁଦ୍ଧରେ ଶ୍ରମିକ ଶ୍ରେଣୀ ସଂଗ୍ରାମ ଜରୁରୀ ଓ ଅପରିହାର୍ଯ୍ୟ କର୍ତ୍ତବ୍ୟ ଥିଲା ।

ଆଜି ସୋଭିଏତ ଋଷ ଓ ପୂର୍ବ ୟୁରୋପୀୟ ଦେଶ ଗୁଡ଼ିକରେ ସମାଜବାଦୀ ବ୍ୟବସ୍ଥାର ପତନ ପରେ ସାମ୍ରାଜ୍ୟବାଦୀ ମାନେ ଶକ୍ତିଶାଳୀ ପାଲଟିଛନ୍ତି ଏବଂ ବିଶ୍ୱରେ ଶକ୍ତିମାନଙ୍କ ଭାରସାମ୍ୟ ନିଜ ସପକ୍ଷରେ ନେଇଯିବା ପାଇଁ ପ୍ରାଣମୁର୍ଚ୍ଛା ଉଦ୍ୟମ କରୁଛନ୍ତି । ବି.ଟି.ଆର୍‌ଙ୍କ ଦେହାନ୍ତ ପରେ ସାମ୍ରାଜ୍ୟବାଦୀ ଆମେରିକା ଅଧିକ ଆକ୍ରମକ ପାଲିଟିଛି ଏବଂ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢ଼େଇ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପାଲଟିଛି ।

ସାମ୍ରାଜ୍ୟବାଦୀମାନଙ୍କ ତଥାକଥିତ ଜଗତିକରଣ, ବିଶ୍ୱବ୍ୟାଙ୍କ ଆର୍ନ୍ତଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱ ବାଣିଜ୍ୟ ସଂଗଠନ ଜରିଆରେ ସମଗ୍ର ବିଶ୍ୱକୁ କବଳିତ କରିବାକୁ ଯାଉଥିବା ବେଳେ, ଏହା ବିରୁଦ୍ଧରେ ଦୁନିଆ ସାରା ପ୍ରତିରୋଧ ମଧ୍ୟ ଗଢ଼ି ଉଠୁଛି ।

ସାମନ୍ତବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଶ୍ରମିକ ଶ୍ରେଣୀର କର୍ତ୍ତବ୍ୟ ସମ୍ପର୍କରେ ରଣଦିଭେଙ୍କ ଶିକ୍ଷା ସାହାସିକ ପ୍ରତିରୋଧର ଦିଗ୍‌ଦର୍ଶନ ହୋଇ ରହିବ ।

## ମାର୍କ୍ସ ଓ ଟ୍ରେଡ୍ ୟୁନିୟନ

'ମାର୍କ୍ସ ଓ ଟ୍ରେଡ୍ ୟୁନିୟନ' ସମ୍ପର୍କରେ ରଣଦିଭେଙ୍କ ଶିକ୍ଷା ସଂଶୋଧନବାଦୀ ଓ ବିପ୍ଳବୀ ଟ୍ରେଡ୍ ୟୁନିୟନ ସମ୍ପର୍କରେ ବିଶେଷ ଆଲୋକପାତ କରିଥାଏ । ଟ୍ରେଡ୍ ୟୁନିୟନ ଆନ୍ଦୋଳନ ସମ୍ପର୍କରେ ମାର୍କ୍ସବାଦୀ ଦୃଷ୍ଟିଭଙ୍ଗି ନେଇ ରଣଦିଭେ ବିଶେଷ ଭାବେ ଆଲୋଚନା କରିଛନ୍ତି । ପ୍ରଥମରେ ସେ ସମାଜବାଦୀ ବିପ୍ଳବ ବାଟରେ ଶ୍ରମିକ ଶ୍ରେଣୀର ଭୂମିକା ସମ୍ପର୍କରେ କମ୍ୟୁନିଷ୍ଟ

ଇସ୍ତାହାରର ଆପ୍ତବାକ୍ୟକୁ ଉଦ୍ଧାର କରିଥିଲେ : "ବୁର୍ଜୁଆ ଶ୍ରେଣୀ ବିରୁଦ୍ଧରେ ମୁହାଁ ମୁହିଁ ଭାବେ ଦଣ୍ଡାୟମାନ ସମସ୍ତ ଶ୍ରେଣୀମାନଙ୍କ ଭିତରୁ ଶ୍ରମିକ ଶ୍ରେଣୀ ହିଁ ପ୍ରକୃତ ବିପ୍ଳବୀ ଶ୍ରେଣୀ ଅଟେ । ଅନ୍ୟାନ୍ୟ ଶ୍ରେଣୀ ଆଧୁନିକ ଶିଳ୍ପ ସାମାନାରେ କ୍ଷୟ ପାଇ ବିଲୁପ୍ତ ହୋଇ ଯାଇଥାନ୍ତି ଯେତେବେଳେ ସର୍ବହରା ଶ୍ରେଣୀ ଏହାର ବିଶେଷ ଓ ଅପରିହାର୍ଯ୍ୟ ଉପାଦାନ ପାଲଟି ତିଷ୍ଠି ରହେ ।"

ଆନ୍ତର୍ଜାତିକ ଶ୍ରମଜୀବୀ ଆସୋସିଏସନ କାର୍ଲମାର୍କ୍ସଙ୍କ ଯୋଗେ ପ୍ରତିଷ୍ଠିତ ହୋଇଥିଲା । ଏହା ଟ୍ରେଡ୍ ୟୁନିୟନ ଭାବେ ପାରସ୍ପରିକ ସହଯୋଗ ପାଇଁ ଗଠିତ ସମାଜ, ସହଯୋଗ ସମିତି ଓ ଶିକ୍ଷା ପ୍ରଦାନକାରୀ ସମାଜିକ ସଂଗଠନ ଭାବେ ଗଠିତ ହୋଇଥିଲା । ଏହା ବିଭିନ୍ନ ମତବାଦର ସଂଗଠନ ମାନଙ୍କୁ ଏକଜୁଟ କରିଥିଲା । ଶ୍ରମିକ ଶ୍ରେଣୀ ଆନ୍ଦୋଳନ ବିରୋଧି ବିଭିନ୍ନ ଝୁଙ୍କ୍ ବିରୁଦ୍ଧରେ କାର୍ଲମାର୍କ୍ସ ସର୍ବଦା ସଂଗ୍ରାମ କରିଥିଲେ ।

ଆରମ୍ଭରେ ସମାଜବାଦୀ ବିଚାର ବିଭିନ୍ନ ଧାର୍ମିକ ଓ ମାନବିକ ସଂସ୍ଥା ମଧ୍ୟରେ ପରିଲକ୍ଷିତ ହୋଇଥିଲା । ଫରାସୀ ସମାଜବାଦୀ ସେଣ୍ଟ ସାଇମନ୍ ଓ ଫୁଏର ତତ୍କାଳୀନ ସମାଜର ଘୋର ସମାଲୋଚକ ଥିଲେ କିନ୍ତୁ ସୁଖ ସମୃଦ୍ଧି ସମ୍ପର୍କରେ ସେମାନଙ୍କ ପ୍ରତିଶ୍ରୁତି କାଳ୍ପନିକ ଥିଲା । ସେମାନେ ବିପ୍ଳବ କଥା ଚିନ୍ତା କରିନଥିଲେ ବରଂ ଶାନ୍ତିପୂର୍ଣ୍ଣ ମାର୍ଗରେ ସାମାଜିକ ପୁର୍ନଗଠନ କଥା କହିଥିଲେ । ସେତେବେଳର ସମୟକୁ ବ୍ୟାଖ୍ୟା କରି ରଣଦିଭେ ଲେଖିଥିଲେ :

"ଶ୍ରମିକ ଶ୍ରେଣୀର ନିତ୍ୟନୈମିତ୍ୟ ସଂଗ୍ରାମରେ, ଟ୍ରେଡ୍ ୟୁନିୟନ ଗଠନ ଓ ଧର୍ମଘଟ ସଂଗ୍ରାମ ଗୁଡ଼ିକୁ ମାର୍କ୍ସ ଏଙ୍ଗେଲସ୍ ଶ୍ରେଣୀଗତ ଶୋଷଣରୁ ମୁକ୍ତିଲାଭ ସଂଗ୍ରାମଭାବେ ବିଚାର କରିଥିଲେ । ସେମାନଙ୍କ ସମସାମୟିକମାନେ ଏହା ଗ୍ରହଣ କରୁନଥିଲେ । ସେମାନେ ସମାଜର ମୁକ୍ତିକୁ ଶ୍ରମିକ ଶ୍ରେଣୀ ସଂଗ୍ରାମର ପରିଧି ବାହାରେ ଦେଖୁଥିଲେ । ଲେସ୍‌ଲେ ଭାବୁଥିଲେ ସାର୍ବଜନିନ ଭୋଟ ଅଧିକାର ଯୋଗେ ଶାନ୍ତିପୂର୍ଣ୍ଣ ବାଟରେ ଏହି ପରିବର୍ତ୍ତନ ଅଣାଯାଇ ପାରିବ । 'ଭୋଟ ପ୍ରଦାନ ପରି ଶାନ୍ତିପୂର୍ଣ୍ଣ ପନ୍ଥା ଯୋଗେ ଶ୍ରମିକ ଶ୍ରେଣୀ ସ୍ୱାର୍ଥ ରକ୍ଷା କରାଯାଇ ପାରିବ ଓ ସମାଜରେ ଶ୍ରେଣୀ ଦ୍ୱନ୍ଦର ଅବସାନ ଏଇ ବାଟରେ ସମ୍ଭବପର ହେବା କଥା ସେ କହିଥିଲେ । ତେଣୁ ଏହା ଶ୍ରମିକମାନଙ୍କର ଶ୍ରେଣୀ ସଂଗ୍ରାମକୁ ପ୍ରତ୍ୟାଖ୍ୟାନ କରିଥିଲା ।'

ଲେସେଲ ମଜୁରୀ ପାଇଁ ଶକ୍ତିଶାଳୀ ଆଇନ (ଆଇରନ ଲ' ଅଫ୍ ୱେଜେସ୍) କଥା କହିଥିଲେ । ଏହାର ଅର୍ଥ, ଶ୍ରମିକମାନେ ଯେତେ ଯାହା କହିଲେ ମଧ୍ୟ ସେମାନେ ନିଜ ଅବସ୍ଥାରେ ପରିବର୍ତ୍ତନ ଆଣି ପାରିବେ ନାହିଁ । କାରଣ, ପୁଞ୍ଜିବାଦୀ ସମାଜ ପରିବର୍ତ୍ତନଶୀଳ ଅଟେ । ବି.ଟି.ଆର୍ ଲେଖିଥିଲେ "ତାଙ୍କ ମତରେ (ଲେସଲେ) ମଜୁରୀ ବୃଦ୍ଧି ପାଇଁ ଧର୍ମଘଟ ପାଗଳାମୀ ବ୍ୟତିତ ଅନ୍ୟକିଛି ନୁହେଁ ଓ ବୃଥା ଦୁଃସାହସିକତା ଅଟେ କାରଣ ଶ୍ରମିକଶ୍ରେଣୀ ମଜୁରୀ କ୍ଷେତ୍ରରେ ଥିବା ସ୍ଥାୟୀ ନିୟମ ବଦଳାଇ ପାରିବ ନାହିଁ । ତେଣୁ ସେ, ସମସ୍ତ ପ୍ରକାର ଅର୍ଥନୈତିକ ସଂଗ୍ରାମକୁ ପ୍ରତ୍ୟାଖାନ କରିଥିଲେ ।"

ଲେସଲେପନ୍ଥୀଙ୍କ ସମର୍ଥକ ମାନଙ୍କ ଦ୍ୱାରା ପ୍ରସ୍ତୁତ ଗୋଥା ପ୍ରୋଗାମ ସମ୍ପର୍କରେ ମାର୍କ୍ସ ଲେଖିଥିଲେ :

"ଶ୍ରେଣୀଭାବେ ଶ୍ରମିକ ଶ୍ରେଣୀର ସଂଗଠନ, ଟ୍ରେଡ୍ ୟୁନିୟନ ବିଷୟରେ ପଦେ ହେଲେ ଏଠାରେ (ଗୋଥା ପ୍ରୋଗାମ) କୁହାଯାଇ ନାହିଁ । ଏହା ଏକ ଗୁରୁତ୍ୱପୂର୍ଣ୍ଣ କଥା, କାରଣ ଟ୍ରେଡ୍ ୟୁନିୟନ ହିଁ ଶ୍ରମିକ ଶ୍ରେଣୀର ଅସଲ ସଂଗଠନ ଯାହା ଦେଇ ଶ୍ରମିକ ଶ୍ରେଣୀ ପୁଞ୍ଜି ବିରୁଦ୍ଧରେ ପ୍ରତ୍ୟେକ ଦିନ ସଂଗ୍ରାମ ଚଳେଇ ଥାଏ ।"

ଆନ୍ତର୍ଜାତିକ ଶ୍ରମଜୀବୀ ଆସୋସିଏସନ, ବାକୁନିନ୍‌ଙ୍କୁ ବହିଷ୍କାର କରିଥିଲା । ୧୮୭୨ରେ ଅନୁଷ୍ଠିତ ହେଗ୍ କନ୍‌ଫରେନ୍ସରେ ଏହି ନୈରାଜ୍ୟବାଦୀଙ୍କୁ ବହିଷ୍କାର କରିବା କାରଣ ହେଉଛି, ସେ ଭୟଙ୍କର ବିଭେଦକାରୀ ଭୂମିକା ତାଙ୍କୁ ଯୁକ୍ତି ଦ୍ୱାରା ପ୍ରତିପାଦିତ କରିବାକୁ ଚାହିଁଥିଲେ : ରାଷ୍ଟ୍ର ହିଁ ପୁଞ୍ଜିକୁ ଜନ୍ମ ଦେଇଛି ତେଣୁ ରାଷ୍ଟ୍ରର ବିଲୋପ ଦରକାର । ସେ ପୁଞ୍ଜିବାଦୀ ରାଷ୍ଟ୍ରର ବିଲୟକୁ ଦେଖିପାରିନଥିଲେ, ଶ୍ରମିକ ଶ୍ରେଣୀ ଯୋଗେ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠାରେ ବିଶ୍ୱାସ କରୁନଥିଲେ । ବାକୁନିନ୍ ଶ୍ରମିକଶ୍ରେଣୀକୁ ସମସ୍ତ ପ୍ରକାର ରାଜନୈତିକ ସଂଗ୍ରାମଠାରୁ ଅଲଗା ରହିବା ପାଇଁ ଏବଂ ଅର୍ଥନୈତିକ ସଂଗ୍ରାମ ଯୋଗେ ରାଷ୍ଟ୍ରର ବିନାଶ ପାଇଁ ଯୁକ୍ତି କରିଥିଲେ ।

"ଶ୍ରମିକମାନେ ଅଧିକାଂଶତଃ ଅଜ୍ଞାନ ଅଟନ୍ତି, ଦର୍ଶନ କ'ଣ ବୁଝନ୍ତି ନାହିଁ ।" ଆଗକୁ ବାକୁନିନ୍ ଲେଖିଲେ : "ତେଣୁ ସେମାନଙ୍କ ପାଖରେ ଗୋଟିଏ ମାତ୍ର ପନ୍ଥା ରହିଛି - କାର୍ଯ୍ୟକାରୀ ଭାବେ ନିଜକୁ ମୁକ୍ତି ପ୍ରଦାନ କରିବା । ତେଣୁ ସେମାନେ କ'ଣ କରିବା ଦରକାର ? ଏକମାତ୍ର ମାର୍ଗ ହେଉଛି, ନିଜ ନିଜ ମ୍ୟାନେଜରମାନଙ୍କ ବିରୁଦ୍ଧରେ ଐକ୍ୟବଦ୍ଧ ହୋଇ ଲଢ଼ିବା; ଏହା ହିଁ ଟ୍ରେଡ୍ ୟୁନିୟନ, ଏହା ହିଁ ସଂଗଠନ ଏବଂ ଏହା ହିଁ ପ୍ରତିରୋଧକାରୀ ପାଣ୍ଠି ସଂଗ୍ରହର ସମନ୍ୱୟକାରୀ ସମାଜ ।" ବାକୁନିନ୍‌ଙ୍କୁ ପ୍ରଥମ ଆନ୍ତର୍ଜାତିକରୁ କାହିଁକି ବହିଷ୍କାର କରାଯାଇଥିଲା, ଏହା ଏଠାରେ ସ୍ପଷ୍ଟ ଅଟେ ।

ବିଲାତର ଅନ୍ୟତମ କଳ୍ପନାବିଳାସୀ ସମାଜବାଦୀ ରବର୍ଟ ଓଏନ୍‌ଙ୍କୁ ମଧ୍ୟ ମାର୍କ୍ସ ଏଙ୍ଗେଲସ୍ ସମାଲୋଚନା କରିଥିଲେ । ଓଏନ୍ ଯଦିଓ ପୁଞ୍ଜିପତି ଓ ଶ୍ରମିକ ଶ୍ରେଣୀ ମଧ୍ୟରେ ଶ୍ରେଣୀ ଯୁଦ୍ଧର ଅବସାନରେ ବିଶ୍ୱାସ କରୁଥିଲେ, କିନ୍ତୁ ଏହି କାମର ଏକମାତ୍ର ତରିକାଥିଲା ସାମାଜିକ ସଂସ୍କାର । ବିଲାତ ଟ୍ରେଡ୍ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ଦୁର୍ବଳତା ସମ୍ପର୍କରେ ମାର୍କ୍ସ ଲେଖିଥିଲେ : "ସେମାନେ ଜାଣିବା ଦରକାର ଯେ ସେମାନେ କେବଳ ପରିଣାମ ବିରୁଦ୍ଧରେ ଲଢୁଛନ୍ତି । 'ପରିଣାମର କାରଣ ବିରୁଦ୍ଧରେ ଲଢୁନାହାଁନ୍ତି ।" ବି.ଟି. ଆର ଏଠାରେ ଦର୍ଶାଇଛନ୍ତି : "ବିଲାତ କ୍ଷେତ୍ରରେ ମଧ୍ୟ ମାର୍କ୍ସଙ୍କୁ - ମଜୁରୀବୃଦ୍ଧି କେବଳ ଦରବୃଦ୍ଧି ହାରକୁ ବୃଦ୍ଧି କରେ ଏବଂ ଶ୍ରମିକମାନଙ୍କ ଅବସ୍ଥାରେ ଉନ୍ନତି ଆଣୁନଥିବା ମତବାଦ ବିରୁଦ୍ଧରେ କହିବାକୁ ପଡ଼ିଥିଲା ।

ବି.ଟି. ରଣଦିଭେ ଶ୍ରେଣୀ ସଂଗ୍ରାମ କ୍ଷେତ୍ରରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ମାର୍କ୍ସବାଦୀ ବିଜ୍ଞାନସମ୍ମତ ଦୃଷ୍ଟିଭଙ୍ଗୀକୁ ନିମ୍ନମତେ ସଂକ୍ଷିପ୍ତରେ ପ୍ରକାଶ କରିଥିଲେ :

- ଟ୍ରେଡ଼ ୟୁନିୟନ ମାନେ ଶ୍ରମିକମାନଙ୍କ ନିତ୍ୟ ପ୍ରତିଦିନ ସ୍ୱାର୍ଥ ରକ୍ଷାପାଇଁ ସ୍ୱର ଉତ୍ତୋଳନ କରିବେ ।
- ଏଥି ସାଙ୍ଗେ ସାଙ୍ଗେ ଏହା ଚେତନାଶୀଳ ଶିବୀରଭାବେ ଶ୍ରମିକ ଶ୍ରେଣୀର ମୁକ୍ତିପାଇଁ କାମ କରିବେ ।
- ଏ ଦିଗରେ ପ୍ରେରିତ ସମସ୍ତ ସାମାଜିକ ଓ ରାଜନୈତିକ ଆନ୍ଦୋଳନକୁ ସାହାଯ୍ୟ କରିବେ ।
- ସେମାନେ ଶ୍ରେଣୀର ସ୍ୱାର୍ଥକୁ ପ୍ରତିନିଧିତ୍ୱ କରିବେ । ନିଜକୁ ସଂକିର୍ଣ୍ଣ ସଂଗଠନ ନକରି, କେବଳ ନିଜ ସଭ୍ୟ ମାନଙ୍କ ଭିତରେ ସୀମାବଦ୍ଧ ନରହି ଅନ୍ୟାନ୍ୟ ସମସ୍ତ ନିପୀଡ଼ିତ ମଣିଷମାନଙ୍କ ପାଇଁ ମଧ୍ୟ ସଂଗଠନ ଦୁଆର ଖୋଲା ରଖିବେ ।
- ଯେଉଁମାନେ ସଂଗଠିତ ହୋଇ ନାହାନ୍ତି, ହୋଇପାରୁନାହାନ୍ତି, ସେମାନଙ୍କୁ ସହଜରେ ସଂଗଠିତ ହେବା ପାଇଁ ସାହାଯ୍ୟ କରିବେ ଏବଂ ସର୍ବାଧିକ ଅବହେଳିତ କୃଷି ଶ୍ରମିକମାନଙ୍କ ସ୍ୱାର୍ଥକୁ ରକ୍ଷା କରିବେ ।
- କାମକରି ଦେଖାଇବେ ଯେ ସେମାନେ ନିଜ ସଂଗଠିତ ଶକ୍ତି କେବଳ ନିଜ ସଂଗଠନର ସଭ୍ୟମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ବ୍ୟବହାର କରୁ ନାହାନ୍ତି ବରଂ ତଳେ ପଡ଼ିରହିଥିବା ଲକ୍ଷ ଲକ୍ଷ ନିପୀଡ଼ିତ ମଣିଷମାନଙ୍କ ପାଇଁ ମଧ୍ୟ ବ୍ୟବହାର କରୁଛନ୍ତି ।

## କୃଷକ ଶ୍ରମିକ ମୈତ୍ରୀ

କୃଷକମାନେ ହିଁ ଦେଶର ସର୍ବାଧିକ ସଂଖ୍ୟକ, ତଳେ ପଡ଼ି ରହିଥିବା ଲକ୍ଷ ଲକ୍ଷ ନିପୀଡ଼ିତ ମଣିଷ ଅଟନ୍ତି । ଶ୍ରମିକ ଶ୍ରେଣୀର କର୍ତ୍ତବ୍ୟ ନେଇ ବି.ଟି.ଆରଙ୍କ ଖୁବ୍ କମ୍ ବକ୍ତୃତା ଓ ଲେଖା ରହିଛି ଯେଉଁଠାରେ ସେ ଶ୍ରମିକ-କୃଷକ ମୈତ୍ରୀ ଉପରେ ଜୋର ଦେଇ ନାହାନ୍ତି । ସି.ଆଇ.ଟି.ୟୁ ପ୍ରତିଷ୍ଠା କଂଗ୍ରେସରେ ଉଦ୍ଯାପନୀ ଉଦ୍‌ବୋଧନରେ ସେ କହିଥିଲେ : "ଶ୍ରେଣୀ ସଂଗ୍ରାମ ବେଳୁ ବେଳ କ୍ରୁର ହେବ, ସଦା ବେଳେ ନିର୍ମମ ଆକ୍ରମଣ ଆସିବ ଏବଂ ଗଣତାନ୍ତ୍ରିକ ଶକ୍ତିମାନଙ୍କ ଭିତରେ ଶକ୍ତିଶାଳୀ ମିତ୍ର ସାଙ୍ଗରେ ନଥିଲେ ଶ୍ରମିକ ଶ୍ରେଣୀ ଏକୁଟିଆ ଏହା ବିରୁଦ୍ଧରେ ଲଢ଼ି ପାରିବ ନାହିଁ ।"

"ଏହା କରିପାରିଲେ ହିଁ ସାଧାରଣ ଗଣତାନ୍ତ୍ରିକ ସଂଗ୍ରାମ ଯୋଗେ ପୁଞ୍ଜିପତି-ଜମିଦାର ସରକାର ବଦଳରେ ଏକ ଅସଲ ଗଣତାନ୍ତ୍ରିକ ସରକାର ପ୍ରତିଷ୍ଠିତ ହୋଇ ପାରିବ । ଏହା ଯୋଗେ କୃଷକ ଜନସାଧାରଣ ଓ ଅନ୍ୟାନ୍ୟ ଗଣତାନ୍ତ୍ରିକ ଶକ୍ତିମାନଙ୍କ ସହ ସ୍ଥାୟୀ ମୈତ୍ରୀ ପ୍ରତିଷ୍ଠା ପୂର୍ବକ; ଶାସକଶ୍ରେଣୀ ଯେଉଁମାନେ ଜନଗଣଙ୍କୁ ଶୋଷଣ କରୁଛନ୍ତି ଏବଂ ସାମ୍ରାଜ୍ୟବାଦୀମାନଙ୍କ ଛପ ଆଗରେ ମୁଣ୍ଡ ନୁଆଁଇ ଚାଲିଛନ୍ତି, ସେମାନଙ୍କ ବିରୁଦ୍ଧରେ ବିଜୟ ହାସଲ କରାଯାଇ ପାରିବ ।"

ବି.ଟି. ରଣଦିଭେ ବିପ୍ଳବୀ ଗଣତାନ୍ତ୍ରିକ ଆନ୍ଦୋଳନ ପାଇଁ ଶ୍ରମିକ-କୃଷକ ମୈତ୍ରୀ ରଣ କୌଶଳଗତ ଚରିତ୍ର ଉପରେ ଓ ଦୈନନ୍ଦିନ ସଂଗ୍ରାମ କ୍ଷେତ୍ରରେ ପରସ୍ପର ପରିପୂରକ ପାଲଟି ମୈତ୍ରୀକୁ ଦୃଢ଼ କରିବା ଉପରେ ସେ ଜୋର ଦେଇଥିଲେ ।

ତାଙ୍କର ଏକ ଲେଖା : "ଶ୍ରମିକ ଓ କୃଷକମାନଙ୍କ ଜୀବନ ମାନ ରକ୍ଷା ପାଇଁ ସଂଗ୍ରାମ କର" - ରେ ସେ ଲେଖିଥିଲେ :

"ଶ୍ରମିକ ଓ କୃଷକମାନେ ସେମାନଙ୍କ ଜୀବନମାନ ରକ୍ଷା ସଂଗ୍ରାମରେ ସମବେତ ହୁଅନ୍ତୁ... କୃଷକମାନେ ଶ୍ରମିକ ଶ୍ରେଣୀର ପରମ ମିତ୍ର । ଶ୍ରମିକଶ୍ରେଣୀ କୃଷକ ଶ୍ରେଣୀ ଗର୍ଭରୁ ହିଁ ଜନ୍ମଲାଭ କରିଛି । ଉନ୍ନତ ଜୀବନମାନ ପାଇଁ ସଂଗ୍ରାମ, ସମାଜବାଦ ପାଇଁ ସଂଗ୍ରାମ, କୃଷକ ମାନଙ୍କ ସହ ମୈତ୍ରୀ ବିନା, କୃଷି ଶ୍ରମିକ ଓ ଗରିବ କୃଷକମାନଙ୍କୁ ପୁଞ୍ଜିପତି - ଜମିଦାର ମାନଙ୍କ ଲୁଣ୍ଠନରୁ ରକ୍ଷା କରିବା ସମ୍ଭବପର ହେବ ନାହିଁ । ଶ୍ରମିକ ଶ୍ରେଣୀର ଯେଉଁ ଐବଦ୍ଧ ସଂଗ୍ରାମ ବିକାଶଲାଭ କରୁଛି, ସମସ୍ତ ଟ୍ରେଡ଼ ୟୁନିୟନ ସଂଗଠନ ସମେତ କେନ୍ଦ୍ରୀୟ ଟ୍ରେଡ଼ ୟୁନିୟନମାନେ କୃଷକମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଆଗେଇ ଆସିବା ଦରକାର । ଗ୍ରାମାଞ୍ଚଳର ଗରିବ ମଣିଷଙ୍କ ପାଖରେ ସହରର ମିତ୍ର - ପାଖା ପାଖି ସେମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ପ୍ରସ୍ତୁତ, ନ୍ୟସ୍ତସ୍ୱାର୍ଥଙ୍କୁ ଏହା ସାବଧାନ କରିବା ଦରକାର ।"

ଯେତେବେଳେ ୧୯୭୩ ମସିହାରେ ଗୁରୁତର ମରୁଡ଼ି ଅବସ୍ଥା ଦେଶରେ ଦେଖାଦେଲା, ବି.ଟି. ରଣଦିଭେ, ସି.ଆଇ.ଟି.ୟୁ. ୨ୟ ସମ୍ମିଳନୀରେ କହିଥିଲେ : "ଦୁର୍ଦ୍ଦଶାଗ୍ରସ୍ତ କୃଷକମାନେ ସେମାନଙ୍କ ଗୃହପାଳିତ ପଶୁଗୁଡ଼ିକ ମରିଯାଉଥିବାରୁ କୃଷିକାମ କରିବା ଅବସ୍ଥାରେ ନାହାନ୍ତି କି ସେମାନଙ୍କୁ ଆଜି ପାଳନ କରିପାରୁନାହାନ୍ତି... ଶ୍ରମିକ ଶ୍ରେଣୀ ଓ ସି.ଆଇ.ଟି.ୟୁ କୃଷି ଶ୍ରମିକ ଓ କୃଷକମାନଙ୍କୁ ରକ୍ଷା କରିବା ପାଇଁ ସରକାର ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିବା ଦରକାର ଯେପରି ସେମାନେ ରିଲିଫରୁ ବଞ୍ଚିତ ହେବେ ନାହିଁ... ଶ୍ରମିକ ଶ୍ରେଣୀ ପକ୍ଷରୁ କୃଷକମାନଙ୍କ ପାଇଁ ଅନୁଦାନ ଓ ରିଲିଫ୍ ବିତରଣର ଆବଶ୍ୟକତା ରହିଛି । ଯଦିଓ କେତେକ କ୍ଷେତ୍ରରୁ ଅନୁଦାନ ରିଲିଫ୍ ପ୍ରଦାନ କରାଯାଇଛି, ତଥାପି ଆମେ ଆମ ଦାୟିତ୍ୱ ପାଳନ କରିଥିବା କୁହାଯାଇ ପାରିବ ନାହିଁ । ସେହିପରି ସରକାରଙ୍କୁ ମଧ୍ୟ ଦାୟିତ୍ୱ ବହନ କରିବା ଦିଗରେ ଏବଂ ପର୍ଯ୍ୟାପ୍ତ ରିଲିଫ୍ ପ୍ରଦାନ ପାଇଁ ବାଧ୍ୟ କରିବା କାମ ମଧ୍ୟ ସମ୍ପୂର୍ଣ୍ଣ ଶକ୍ତି ଖଟେଇ କରାଯାଇ ନାହିଁ । ଏ ବିଫଳତା ସମ୍ପୂର୍ଣ୍ଣ ଅଣଉଦାରତାପୂର୍ଣ୍ଣ, ରାଜନୈତିକ ଆତ୍ମହତ୍ୟା ଓ ବିଶ୍ୱାସଘାତକତା ଅଟେ । ସମାଜବାଦ ଓ ଗଣତନ୍ତ୍ର ପାଇଁ ଟ୍ରେଡ଼ ୟୁନିୟନ ଗୁଡ଼ିକର ଯାବତୀୟ ଆଭିମୁଖ୍ୟ ଏଠାରେ ଅସାର ପାଲଟି ଯାଏ, ଯଦି ସେ କୃଷକମାନଙ୍କୁ ରକ୍ଷା କରିବା ପାଇଁ ବାହାରି ପାରିଲା ନାହିଁ ।"

ବି.ଟି. ରଣଦିଭେ ଖାଦ୍ୟ ଓ ଅତ୍ୟାବଶ୍ୟକ ସାମଗ୍ରୀ ଗୁଡ଼ିକର ଦର ହ୍ରାସ ପାଇଁ ସଦାସର୍ବଦା ଭୂସଂସ୍କାର ଉପରେ ଜୋର ଦେଇଥିଲେ । ସି.ଆଇ.ଟି.ୟୁ ତୃତୀୟ ସମ୍ମିଳନୀ ବେଳେ ସେ

ଦର୍ଶାଇଥିଲେ - "ବିଶାଳ ସଂଖ୍ୟକ କୃଷି ଶ୍ରମିକ ଓ କୃଷକ ମାନଙ୍କ ସହ ମୈତ୍ରୀ ପ୍ରତିଷ୍ଠା ପୂର୍ବକ, ଜମି ଉପରେ ଜମିଦାରମାନଙ୍କ ଏକାଧିକାର ବିଲୋପ ଓ ଚାଷୀମାନଙ୍କ ହାତରେ ଜମିର ପୁର୍ନଃବଣ୍ଟନ ଦାବି କରିବା ଆବଶ୍ୟକ । କୃଷି ବିପ୍ଳବ ବିନା ଦରବୃଦ୍ଧି ବା ଖାଦ୍ୟାଭାବ ଜନିତ ଦୁର୍ଭିକ୍ଷରୁ କୃଷକମାନେ ମୁକ୍ତି ପାଇବେ ନାହିଁ । ତୁରନ୍ତ ଜମିଦାର ମାନଙ୍କ ପାଖରେ ଥିବା ମହଯୁଦ ଖାଦ୍ୟଶସ୍ୟ ଧାର୍ଯ୍ୟ ମୂଲ୍ୟରେ ବଣ୍ଟନ ପାଁଇ ବ୍ୟବସ୍ଥା ପ୍ରଣୟନ ନିମନ୍ତେ ଦାବି ଉଠିବା ଦରକାର । ଛୋଟ ଚାଷୀ ମାନଙ୍କୁ ସେମାନଙ୍କ ଉତ୍ପାଦନର ଲାଭଜନକ ଦର ଓ ବୋନସ ପ୍ରଦାନ, ଏବଂ ରାଷ୍ଟ୍ରିୟ ଖାଦ୍ୟଶସ୍ୟ ସଂଗ୍ରହ ଓ ବିତରଣ ବ୍ୟବସ୍ଥା ପାଇଁ ଦାବି କରିବା ଦରକାର । ଟ୍ରେଡ୍ ୟୁନିୟନମାନେ ଶ୍ରମିକ ଶ୍ରେଣୀକୁ ଏ ସମ୍ପର୍କରେ ଶିକ୍ଷିତ କରି ପ୍ରଚଳିତ ଅର୍ଥ ବ୍ୟବସ୍ଥା ଜମିଦାରମାନଙ୍କ ଆଧିପତ୍ୟ ବିରୁଦ୍ଧରେ ଲଢ଼େଇ କରିବା ଦରକାର ।" ପୁନର୍ବାର ୧୯୮୭ର ଦେଶବ୍ୟାପୀ ମରୁଡ଼ି ପରିସ୍ଥିତି ବେଳେ ମଧ୍ୟ ବି.ଟି. ରଣଦିଭେ ଶ୍ରମିକ ଶ୍ରେଣୀକୁ କୃଷକ ପାଖରେ ଠିଆ ହେବା ପାଇଁ ଡାକରା ଦେଇଥିଲେ - "ସମସ୍ତ ଟ୍ରେଡ୍ ୟୁନିୟନ, ଶ୍ରମିକ ଶ୍ରେଣୀ ମଧ୍ୟରେ ଥିବା ସକଳ ସ୍ତରର ମଣିଷ ଭାରତୀୟ କୃଷକମାନଙ୍କୁ ରକ୍ଷା କରିବା ପାଇଁ ସେମାନଙ୍କ ଆୟରୁ ଅନୁଦାନ ଦେଇ ସଂହତି ପ୍ରକାଶ କରିବା ଦରକାର କାରଣ କୃଷକମାନେ ହିଁ ଆମ ଦେଶର ମୁଖ୍ୟ ସ୍ରୋତ । ସେମାନଙ୍କୁ ଏ ଘଡ଼ି ସନ୍ଧି ମୂହୁର୍ତ୍ତରେ ସହାୟତା ପ୍ରଦାନ ବାଟରେ ଶ୍ରମିକମାନଙ୍କ ଟ୍ରେଡ୍ ୟୁନିୟନର ମିଳିତ ଆନ୍ଦୋଳନକୁ ଏକଜୁଟ ହୋଇ ଅନେକ ପଥ ଅତିକ୍ରମ କରିବାକୁ ହେବ ।"

## ଟ୍ରେଡ୍ ୟୁନିୟନରେ ଗଣତାନ୍ତିକ ପରିଚାଳନା

ଇତିହାସ ନ୍ୟସ୍ତ କରିଥିବା ଦାୟିତ୍ୱକୁ ସଠିକ୍‌ଭାବେ ପାଳନ କରିବା ପାଇଁ ଶକ୍ତିଶାଳୀ ଟ୍ରେଡ୍ ୟୁନିୟନ ସଂଗଠନର ପୂର୍ବସର୍ତ୍ତ ହେଉଛି ଗଣତାନ୍ତିକ ପରିଚାଳନା । ବି.ଟି.ଆର ଅତ୍ୟନ୍ତ ସ୍ପଷ୍ଟ ଭାବରେ ଟ୍ରେଡ୍ ୟୁନିୟନର ଗଣତାନ୍ତିକ ପରିଚାଳନା ଉପରେ ଜୋର ଦେଇଥିଲେ । ସଂଶୋଧନବାଦ ବିରୁଦ୍ଧରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ସବୁ ସ୍ତରର କର୍ମି ଓ ଶ୍ରମିକମାନଙ୍କୁ ନୀତି ପ୍ରଣୟନ କାମରେ ସଂପୃକ୍ତ କରିନପାରିଲେ ସଂଗ୍ରାମ ସଫଳ ହେବ ନାହିଁ - ବି.ଟି.ଆର ଏକଥା ବାରମ୍ବାର କହୁଥିଲେ ।

ଅନେକ ଟ୍ରେଡ୍ ୟୁନିୟନରେ ସାଧାରଣ ସଭ୍ୟମାନଙ୍କୁ ଦର୍ଶକଭାବେ ବିଚାର କରାଯାଇଥାଏ, ସମସ୍ତ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଅଳ୍ପ କେତେଜଣ ନେତା ସାଧାରଣ ସଭ୍ୟ ମାନଙ୍କ ପରାମର୍ଶ ବିନା ଗ୍ରହଣ କରିଥାନ୍ତି ।

ସି.ଆଇ.ଟି.ୟୁର ପ୍ରତିଷ୍ଠା ସମ୍ମିଳନୀରେ ବି.ଟି.ଆର ଅତ୍ୟନ୍ତ ସ୍ପଷ୍ଟ ଭାଷାରେ ନିମ୍ନ ପ୍ରକାର ମନ୍ତବ୍ୟ ଦେଇଥିଲେ :

"ଆମ ଦେଶରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ଗଣତାନ୍ତିକ ପରିଚାଳନାର ଅଭାବ ଏକ ମୂଳରୋଗ ଅଟେ । ଗଣତାନ୍ତିକ ପରିଚାଳନା କହିଲେ କ'ଣ ବୁଝାଇଥାଏ ?

ଅଧିକାଂଶ ୟୁନିୟନ ଗୁଡ଼ିକରେ ସାଧାରଣ ସଭ୍ୟମାନଙ୍କୁ ଅତିଥି ବ୍ୟବହାର କରାଯାଉଥିବା ସତ କି ମିଛ ? ଅସଲରେ ଏହି ୟୁନିୟନ ସାଧାରଣ ସଭ୍ୟମାନଙ୍କର ହିଁ ନିଜ ଘର ଓ ଦୁର୍ଗ ଅଟେ । ଭଲ ନେତା, ତାଙ୍କ ଉଦ୍ଦେଶ୍ୟ ମଧ୍ୟ ଉତ୍ତମ, ଆନୁଗତ୍ୟ ମଧ୍ୟ ସନ୍ଦେହାତିତ,କିନ୍ତୁ ଧୀରେ ଧୀରେ ସେମାନେ ଟ୍ରେଡ଼ ୟୁନିୟନ ବ୍ୟୁରୋକ୍ରେଟ ପାଲଟି ଯାଇଥାନ୍ତି । ସେମାନେ ହିଁ ୟୁନିୟନ ଉପରେ ଏକାଧିକାର ଚଳେଇଥାନ୍ତି । ଅଳ୍ପ କେତେଜଣ ନେତା ୟୁନିୟନର ସର୍ବାଧିକାରୀ ପାଲଟିଥାନ୍ତି । ଏଣୁ ୟୁନିୟନ ସାଧାରଣ ଶ୍ରମିକମାନଙ୍କ ସଂଗଠନ ହୋଇ ରହେ ନାହିଁ । ଏଥିରୁ କେବଳ ଗୋଟିଏ କଥା ପ୍ରକାଶକୁ ଆସେ - ଶ୍ରମିକମାନଙ୍କ ୟୁନିୟନ ଆନୁଗତ୍ୟ ଅନେକ ଭଲ । ସେମାନେ ଧର୍ମଘଟ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥାନ୍ତି । ୟୁନିୟନକୁ ଚାନ୍ଦା ଦେଇଥାନ୍ତି କିନ୍ତୁ ନିଷ୍ପତ୍ତି ନେବା ଦାୟିତ୍ୱ ୟୁନିୟନର ନେତାମାନଙ୍କ ଉପରେ ଛାଡ଼ି ଦିଆଯାଇଥାଏ । ଆମେ ଏପରି ଚେତନା ତିଆରି କରିଛୁ ଯେ କେହି ଜଣେ ହେଲେ ଶ୍ରମିକ ଟ୍ରେଡ଼ ୟୁନିୟନ ଅଗଣତାନ୍ତ୍ରିକଭାବେ ଚାଲୁଥିବା ନେଇ ତୁଣ୍ଡ ଖୋଲନ୍ତି ନାହିଁ । ସେମାନେ ଭାବିଥାନ୍ତି, ୟୁନିୟନ ମାନେ ଏପରିଭାବେ ହିଁ ଚାଲିଥାନ୍ତି ।"

ସି.ଆଇ.ଟି.ୟୁ.ର ଭୁବନେଶ୍ୱର ସାଂଗଠନିକ ଦଲିଲ ଏହି ଦୁର୍ବଳତା ନେଇ ବିଶେଷ ଆଲୋଚନା କରିଥିଲା ଏବଂ ନିଃସନ୍ଦେହ ଭାବେ ଆଜି ଦିନରେ ଏ କ୍ଷେତ୍ରରେ କେତେକ ସୁଧାର ଘଟିଛି । ୟୁନିୟନ ଗୁଡ଼ିକର ବୈଠକ ପ୍ରାୟ ନିୟମିତ ବସୁଛି । ବୈଠକ ଗୁଡ଼ିକରେ ଶ୍ରମିକମାନଙ୍କ ଅଂଶ ଗ୍ରହଣ ମଧ୍ୟ ବୃଦ୍ଧି ପାଇଛି । କେତେକାଂଶରେ ଉଚ୍ଚତର କମିଟି ଗୁଡ଼ିକର କାର୍ଯ୍ୟ ପ୍ରଣାଳୀରେ ମଧ୍ୟ କେତେକ ଉନ୍ନତି ଘଟିଥିବା ଦେଖାଯାଇଥାଏ, କିନ୍ତୁ ଏହା ସତ୍ତ୍ୱେ ଗଣତାନ୍ତ୍ରିକ ପରିଚାଳନା ଯେ ସମ୍ପୂର୍ଣ୍ଣଭାବେ କାର୍ଯ୍ୟକାରୀ ହୋଇଛି, ଏକଥା କୁହାଯାଇ ପାରିବ ନାହିଁ । ବି.ଟି.ଆର ଦର୍ଶାଇଥିବା କ୍ଷତିକାରକ ପରିଚାଳନାରୁ ମୁକ୍ତିଲାଭ ଏବେବି ସମ୍ପୂର୍ଣ୍ଣ ହୋଇନାହିଁ ।

ଅନେକ ସମୟରେ ସ୍ଥାନୀୟ ୟୁନିୟନ ନେତାମାନେ, ବି.ଟି.ଆରଙ୍କ ପାଖକୁ ସେମାନଙ୍କ ସମସ୍ୟା ନେଇ ପରାମର୍ଶ ପାଇଁ ଆସୁଥିଲେ । ସେ ସେମାନଙ୍କୁ ୟୁନିୟନର ସାଧାରଣ ବୈଠକ ବସୁଛି କି ନାହିଁ, ପଚାରିବୁଝୁ । ସେ ସେମାନଙ୍କୁ ୟୁନିୟନ ବୈଠକ ଡାକି ଆଲୋଚନା କରିବାକୁ କହୁଥିଲେ ଏବଂ ସମସ୍ୟା ଉପରେ ଶ୍ରମିକମାନେ କେଉଁ ପନ୍ଥା ଉଚିତ୍ ମନେକରୁଛନ୍ତି, ଜାଣିବା ପାଇଁ ପରାମର୍ଶ ଦେଉଥିଲେ । ଏପରି କ୍ଷେତ୍ରରେ ଶ୍ରମିକମାନଙ୍କ ଠାରୁ ମିଳୁଥିବା ପରାମର୍ଶ ହିଁ ୟୁନିୟନର ନୀତି ସ୍ଥିର ହେଉଥିଲା ଓ ସଫଳ ପ୍ରମାଣିତ ହେଉଥିଲା ।

ଏପରିକି ଅନେକ ସମୟରେ ଘଟିଛି ଯେତେବେଳେ ଦୀର୍ଘକାଳ ଆନ୍ଦୋଳନ ସତ୍ତ୍ୱେ ନଗଦ ଅବସ୍ଥାରେ ସଂଗ୍ରାମ ଆଉ ଆଗକୁ ଆଗେଇ ନିଆ ଯାଇ ପାରୁନାହିଁ । ବି.ଟି.ଆର ସେତେବେଳେ ଶ୍ରମିକମାନଙ୍କ ସାଧାରଣ ବୈଠକର ମତାମତ ଭିତ୍ତିରେ ନେତାମାନଙ୍କୁ ନିଷ୍ପତ୍ତି ନେବା ପାଇଁ ପରାମର୍ଶ ଦେଉଥିଲେ ।

ବି.ଟି.ଆର. ସଦାବେଳେ ନେତୃତ୍ୱକୁ ମାଲିକମାନଙ୍କ ସହ ଆଲୋଚନାର ଅଗ୍ରଗତି ଏବଂ ଆଲୋଚନା ବିଷୟ ଶ୍ରମିକମାନଙ୍କ ମଧ୍ୟରେ ଉପସ୍ଥାପିତ କରିବାକୁ କହୁଥିଲେ । ଯେଉଁ କ୍ଷେତ୍ରରେ ନେତାମାନେ ଶ୍ରମିକମାନଙ୍କୁ ରିପୋର୍ଟ କରୁନଥିବା ଜାଣୁଥିଲେ, ନେତୃତ୍ୱକୁ ଭର୍ତ୍ସନା କରୁଥିଲେ ।

କୌଣସି ରାଜିନାମା ତଥା ଚୁକ୍ତି ହେଉଥିଲେ ନେତୃତ୍ୱକୁ ଏହା ସାଧାରଣ ଶ୍ରମିକମାନଙ୍କ ପାଖରେ ରଖିବା ପାଇଁ ପରାମର୍ଶ ଦେଉଥିଲେ ଏବଂ ଚୁକ୍ତି ସ୍ୱାକ୍ଷରିତ ହେବା ପୂର୍ବରୁ ଶ୍ରମିକମାନଙ୍କ ଅନୁମୋଦନ ଗ୍ରହଣ ଉପରେ ଜୋର ଦେଉଥିଲେ ।

## ଶ୍ରମଜୀବୀ ମହିଳା

ଶ୍ରମଜୀବୀ ମହିଳାମାନଙ୍କ ଆନ୍ଦୋଳନ ସମ୍ପର୍କରେ ବି.ଟି.ଆରଙ୍କ ଉଦ୍‌ବେଗ ଉଲ୍ଲେଖ ଯୋଗ୍ୟ ଅଟେ । ଯେତେବେଳେ ୧୯୭୯ରେ ପ୍ରଥମ ଶ୍ରମଜୀବୀ ମହିଳା ସମନ୍ୱୟ ସମିତି ଗଠନ ମାନ୍ଦ୍ରାଜଠାରେ ହେଲା, ସେ ତାଙ୍କ ଉଦ୍‌ବୋଧନରେ କହିଥିଲେ :

"ସି.ଆଇ.ଟି.ୟୁ.କୁ ଏଥିପାଇଁ ଏକ ବିଶେଷ ସମ୍ମିଳନୀ ଡକାଇବାକୁ ପଡ଼ିଛି କାରଣ ଶ୍ରମଜୀବୀ ମହିଳାମାନଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତି ନଜର ଦିଆଯାଉନାହିଁ । ସରକାର ଏ ବିଷୟରେ ନିରୁତ୍ସାହ ଥିଲାବେଳେ ମାଲିକମାନେ ସେମାନଙ୍କ ପ୍ରତି ଶତ୍ରୁଭଳି ଆଚରଣ କରନ୍ତି । ଏପରିକି ଟ୍ରେଡ୍ ୟୁନିୟନମାନେ ମଧ୍ୟ ସେମାନଙ୍କ ଦାବି ପ୍ରତି କୌଣସି ଧ୍ୟାନ ଦିଅନ୍ତି ନାହିଁ । ଶ୍ରମିକଶ୍ରେଣୀର ବହୁ ଧର୍ମଘଟ ସଂଗଠିତ ହୋଇଛି, ଖୁବ୍ ଅଳ୍ପ କ୍ଷେତ୍ରରେ ଶ୍ରମଜୀବୀ ମହିଳାମାନଙ୍କ ଦାବିଦୁବା ସାମିଲ ହୋଇଥାଏ ।"

ସେ ପୁଣି କହିଥିଲେ : "ବିଶେଷକରି ଭାରତୀୟ ସମାଜରେ ମହିଳାମାନେ ଅନ୍ୟାନ୍ୟ କାରଣ ବ୍ୟତିତ ଏ ପ୍ରକାର ଦୁର୍ବଳତାର ଶୀକାର ପାଲଟିଛନ୍ତି । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟ କ୍ଷେତ୍ରରେ ମହିଳାମାନଙ୍କୁ ନିକୃଷ୍ଟଭାବେ ବିଚାର କରାଯାଇଥାଏ । ଏହି ବାଛ ବିଚାରକୁ ମଧ୍ୟ ଶ୍ରମଜୀବୀ ମହିଳାମାନଙ୍କ କ୍ଷେତ୍ରରେ ଅନୁସରଣ କରାଯାଇଥାଏ ଏବଂ ଏହା ବିରୁଦ୍ଧରେ ଟ୍ରେଡ୍ ୟୁନିୟନ ମାନଙ୍କର ସଂଗ୍ରାମ ପ୍ରଥମ କର୍ତ୍ତବ୍ୟ ଅଟେ । ଆମର ବିଭିନ୍ନ ଟ୍ରେଡ୍ ୟୁନିୟନ ଓ ନେତାମାନେ ମହିଳା ମାନଙ୍କ ପ୍ରତି ନିକୃଷ୍ଟ ମନୋଭାବରୁ ଉର୍ଦ୍ଧ୍ୱରେ ରହିଥିବା କୁହାଯାଇ ପାରିବ ନାହିଁ ।"

ବି.ଟି.ଆର. କହିଥିଲେ : "ମାଲିକମାନେ ଶ୍ରମଜୀବୀ ମହିଳାମାନଙ୍କୁ ପ୍ରସୂତିକାଳୀନ ସୁବିଧା ଓ ଅନ୍ୟାନ୍ୟ ଆଇନ ମାଫିକ୍ ସୁବିଧା ପ୍ରଦାନରୁ ରକ୍ଷା ପାଇବା ପାଇଁ ଛଟେଇ କରିଦିଅନ୍ତି । ବହୁ ଶିଳ୍ପରେ ଶ୍ରମଜୀବୀ ମହିଳାମାନଙ୍କ ସଂଖ୍ୟା ହ୍ରାସ ପାଉଛି । ଛଟେଇ କଥା ଆସିଲେ ମହିଳାମାନେ ଏହାର ପ୍ରଥମ ଶୀକାର ପାଲଟିଥାନ୍ତି ।"

ବି.ଟି.ଆର ତେଣୁ ସ୍ପଷ୍ଟ ଭାବେ କହିଥିଲେ : "ଆମର ନେତା ଓ କ୍ୟାଡ଼ର ସମେତ ୟୁନିୟନ ସର୍ବୋତଭାବେ ପୁରୁଷ ପ୍ରଧାନ ସଂଗଠନ ପାଲଟିବା ଅନୁଚିତ୍ ଅଟେ । ଟ୍ରେଡ୍ ୟୁନିୟନ ମାନେ ମହିଳା ସାଥୀମାନଙ୍କୁ ନେତୃତ୍ୱ ବହନ ପାଇଁ ଶିକ୍ଷିତ କରିବା ସହ ନେତୃତ୍ୱ ପ୍ରଦାନ କରିବା

ଦରକାର । ଟ୍ରେଡ଼ ୟୁନିୟନ ଆନ୍ଦୋଳନ ପୂର୍ଣ୍ଣାଙ୍ଗ ଲାଭ କରିବ ନାହିଁ ଯଦି ମହିଳାମାନଙ୍କ ଅଂଶ ଗ୍ରହଣ ସଂଗଠନ ଗଢ଼ିବା କାମରେ ଆଗେଇବ ନାହିଁ ଓ ସେମାନେ ନେତୃତ୍ୱ ପ୍ରଦାନ ପାଇଁ ସକ୍ଷମ ହେବେ ନାହିଁ । ହଜାର ହଜାର ମହିଳା ଧର୍ମଘଟ ଲଢ଼େଇରେ ଅଂଶ ଗ୍ରହଣ କରିଛନ୍ତି, କାରାବରଣ ସହ ପୁରୁଷ ଶ୍ରମିକମାନଙ୍କ ପରି ଦମନର ଶିକାର ହୋଇଛନ୍ତି । କିନ୍ତୁ ୟୁନିୟନର ନେତୃତ୍ୱକାରୀ ପଦ ପଦବୀରେ ସେମାନଙ୍କୁ ଦୂରେଇ ରଖାଯାଇଥାଏ ।"

ସି.ଆଇ.ଟି.ୟୁର ବିଭିନ୍ନ ବୈଠକରେ ତାଙ୍କ ବକ୍ତୃତାରେ ସେ ମହିଳାମାନଙ୍କ ପ୍ରତି ସାମନ୍ତବାଦୀ ଦୃଷ୍ଟିଭଙ୍ଗୀ ପରିବର୍ତ୍ତନ ଉପରେ ଜୋର ଦେଉଥିଲେ । ମହିଳାମାନଙ୍କ ସମସ୍ୟା ଟ୍ରେଡ଼ ୟୁନିୟନ ସମସ୍ୟା ନୁହେଁ - ବିଚାରକୁ ତୀବ୍ର ସମାଲୋଚନା କରୁଥିଲେ ।

ବି.ଟି.ଆର. ପୁଞ୍ଜିବାଦୀ ବ୍ୟବସ୍ଥାରେ ମହିଳମାନଙ୍କ ଉପରେ ଆର୍ଥିକ ଶୋଷଣ ଏବଂ ସମାଜରେ ପରିବାରର ପୁରୁଷମାନଙ୍କ ଯୋଗେ ଶୋଷଣ ବିରୁଦ୍ଧରେ ସଦା ସର୍ବଦା ଧ୍ୟାନ ଆକର୍ଷଣ କରାଉଥିଲେ । ଶ୍ରମଜୀବୀ ମହିଳାମାନଙ୍କୁ ଏହି ଉଭୟ ଶୋଷଣ ବିରୁଦ୍ଧରେ ଲଢ଼ିବାକୁ ଡାକରା ଦେଇଥିଲେ ।

ବି.ଟି.ଆର.ଙ୍କ ତାଗିଦ୍ ଅନୁଯାୟୀ ଆମ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଶ୍ରମଜୀବୀ ମହିଳାମାନଙ୍କୁ ସମ୍ପୂର୍ଣ୍ଣ ସମାନ ମର୍ଯ୍ୟାଦା ପ୍ରଦାନ ପାଇଁ ପଦକ୍ଷେପ ଗ୍ରହଣ କରିବା ଦରକାର ।

## ବିଭେଦକାରୀ ଶକ୍ତିମାନଙ୍କ ସମ୍ପର୍କରେ

ପୁଞ୍ଜିପତି - ଜମିଦାର ଶ୍ରେଣୀ ଲଗାତରଭାବେ ଶ୍ରମିକ ଶ୍ରେଣୀକୁ ଭାଗ ଭାଗ କରିବାକୁ ଚାହିଁ ଥାଏ । ଶ୍ରମଜୀବୀ ମଣିଷଙ୍କୁ ଜାତି, ଧର୍ମ, ଭାଷା, ଅଞ୍ଚଳ ଆଦି ଭିତ୍ତିରେ ଭାଗ ଭାଗ କରି ଶ୍ରମିକ ଶ୍ରେଣୀ ଆନ୍ଦୋଳନକୁ ଦୁର୍ବଳ କରାଯାଏ । ବେଳେ ବେଳେ ଏହି ବିଭେଦକାରୀ ଶକ୍ତିମାନେ ବହୁ ସଂଖ୍ୟକ ଶ୍ରମିକମାନଙ୍କୁ ନିଜ ଆଡ଼େ ଆକୃଷ୍ଟ କରିଥାନ୍ତି, ଫଳରେ ଶ୍ରମିକ ଶ୍ରେଣୀର ଆନ୍ଦୋଳନ ଦୁର୍ବଳ ପାଲଟିଥାଏ ।

ଶ୍ରମିକ ଶ୍ରେଣୀ ଓ ବିଭେଦକାରୀ ଶକ୍ତି ଲେଖାରେ ବି.ଟି.ଆର ଲେଖିଥିଲେ "ଶ୍ରମିକଶ୍ରେଣୀକୁ ଧର୍ମ ଓ ସାମ୍ପ୍ରଦାୟିକ ବିଭେଦର ଉର୍ଦ୍ଧ୍ୱକୁ ଯାଇ ଜନସାଧାରଣଙ୍କ ମଧ୍ୟରେ ବ୍ୟାପକ ଏକତା ଓ ରାଷ୍ଟ୍ରିୟ ସଂହତି ରକ୍ଷା କରିବାକୁ ପଡ଼ିବ । ଯଦି ଶ୍ରମିକମାନଙ୍କ ଭିତରୁ କୌଣସି ଅଂଶ ସାମ୍ପ୍ରଦାୟିକ ବିଭେଦର ଶୀକାର ପାଲଟିଲା ତେବେ ଶ୍ରମିକ ଶ୍ରେଣୀ ଭବିଷ୍ୟତ ବିପଦରେ ପଡ଼ିବ । ଦୁର୍ଭାଗ୍ୟର ବିଷୟ ଭାରତବର୍ଷରେ ବିଭେଦକାରୀମାନଙ୍କ ଆକ୍ରମଣ ଚାଲିଥିବାବେଳେ ଶ୍ରମିକମାନଙ୍କ ମଧ୍ୟରୁ କେତେକ ଧର୍ମୀୟ ଓ ସାମ୍ପ୍ରଦାୟିକ ଆବେଗରେ ଭାସି ଯାଇଥାନ୍ତି ବା ନିରପେକ୍ଷଭଳି ବ୍ୟବହାର କରିଥାନ୍ତି । ସେମାନେ ରାସ୍ତାକୁ ଓହ୍ଲାଇ ଦୁଷ୍କୃତକାରୀଙ୍କୁ ପ୍ରତିରୋଧ କରନ୍ତିନାହିଁ । ଏକଥା ଭାଷାଗତ, ଓ ସାମ୍ପ୍ରଦାୟିକ ଦଙ୍ଗାଗୋଳବେଳେ ବିଶେଷଭାବେ ଘଟିଥାଏ । ସଂଖ୍ୟା ଗରିଷ୍ଠ ଭାଷାଭାଷି ଓ ଧର୍ମର ଶ୍ରମିକମାନେ ନୀରବରେ ହାତ ଜାକି ବସନ୍ତି

ଅଥଚ ସେମାନଙ୍କ ଶ୍ରେଣୀର ଭାଇମାନଙ୍କ ଉପରେ ଆକ୍ରମଣ ଚାଲିଥାଏ । ଏପରି ଅଥର୍ବ ପଣିଆ ବିରୁଦ୍ଧରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଲଢ଼ିବା ଦରକାର ଏବଂ ଏକ ଧର୍ମନୀରପେକ୍ଷ ସେନା ଭଳି ଶ୍ରେଣୀ ଏକତା ଓ ଜନଗଣଙ୍କ ଏକତା ରକ୍ଷାପାଇଁ ଆଗେଇଯିବା ଦରକାର । ଏକଥା ମନେ ରଖିବା ଦରକାର ଯେ ବହୁକାଳ ବ୍ୟାପୀ ସଂଗ୍ରାମ ଫଳରେ ଯେଉଁ ଏକତା ଗଢ଼ି ଉଠିଛି, ଏହା ଶ୍ରମିକଶ୍ରେଣୀ ଏକ ଶ୍ରେଣୀ ଶକ୍ତି ଭାବେ ଉଭା ନହେବା କାରଣରୁ, ଜନସାଧାରଣଙ୍କୁ ପ୍ରଭାବିତ କରିବାରେ ବିଫଳ ହେବାରୁ, ବୃଥା ପ୍ରମାଣିତ ହେବ ।”

ପଞ୍ଜାବ ଓ ଆସାମରେ ବିଭେଦକାରୀ ଶକ୍ତି କିପରିଭାବେ ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ବିଭେଦଗ୍ରସ୍ତ କରିଥିଲେ ସେ ଆଡ଼େ ବି.ଟି.ଆର. ଧ୍ୟାନ ଆକର୍ଷଣ କରାଇଥିଲେ । ପୁଞ୍ଜିବାଦୀ ଶୋଷଣ ଆଡୁ ଧ୍ୟାନ ଆଡ଼େଇ ଦେବା ପାଇଁ ମହାରାଷ୍ଟ୍ରରେ ଶିବସେନା ଅଣମହାରାଷ୍ଟ୍ର ଶ୍ରମିକମାନଙ୍କ ବିରୁଦ୍ଧରେ ପ୍ରଚାର କରୁଥିବା ଘୃଣାକୁ ସେ ତୀବ୍ର ନିନ୍ଦା କରିଥିଲେ । ଆର.ଏସ୍.ଏସ୍ ଦ୍ୱାରା ସଂଗଠିତ ଦଂଗା ଓ ହିନ୍ଦୁତ୍ୱବାଦୀମାନଙ୍କ କୁକାର୍ଯ୍ୟ ବହୁସମୟରେ ଶ୍ରମିକ ଶ୍ରେଣୀକୁ ନିରସ୍ତ୍ର କରିଥିଲା । ଆନ୍ଧ୍ରରେ ଯେଉଁ ଶ୍ରମିକ ଶ୍ରେଣୀ ଭାଷାଭିତ୍ତିରେ ପ୍ରଦେଶ ଗଠନ ପାଇଁ ବିରତ୍ୱପୂର୍ଣ୍ଣ ସଂଗ୍ରାମ କରିଥିଲା, ଏହି ଶ୍ରମିକ ଶ୍ରେଣୀକୁ ତେଲଙ୍ଗନା ବିଚ୍ଛିନ୍ନତାବାଦୀ ମାନେ ଭାଗାଭାଗି କରୁଛନ୍ତି - ସେ ଏହାର ନିନ୍ଦା କରିଥିଲେ ।

ଏହି ବିଭେଦକାରୀମାନଙ୍କ ଆନ୍ଦୋଳନ ପଛରେ ସାମ୍ରାଜ୍ୟବାଦୀମାନଙ୍କ ପ୍ରଚ୍ଛନ୍ନ ହାତ ରହିଥିବା ଅଭିଯୋଗ କରି ବି.ଟି.ଆର. କହିଥିଲେ : “ପାଶ୍ଚାତ୍ୟ ଦେଶର ସାମ୍ରାଜ୍ୟବାଦୀ ଆମେରିକା ଓ ସେମାନଙ୍କ ଏଜେଣ୍ଟମାନେ ଭାରତବର୍ଷକୁ ଭାଙ୍ଗି ଟୁକୁଡ଼ା ଟୁକୁଡ଼ା କରିବାକୁ ଚାହୁଁଛନ୍ତି । ଏହା ଫଳରେ ଦେଶକୁ ଦୁର୍ବଳ କରିଦେଇ ଦାସତ୍ୱ ବେଡ଼ି ପିନ୍ଧାଇବେ ଓ ଶୋଷଣ କରିବେ ।”

ବି.ଟି.ଆର. ସଂଖ୍ୟାଲଘୁ ମାନଙ୍କ ସୁରକ୍ଷା ପାଇଁ ସ୍ୱର ଉତ୍ତୋଳନ କଲାବେଳେ, ମୁସଲମାନ ମୌଳବାଦୀ ମାନଙ୍କ ଦ୍ୱାରା ପ୍ରଚାର କରାଯାଉଥିବା ଘୃଣାକୁ ନିନ୍ଦା କରି ଏହା ସଂଖ୍ୟାଗରିଷ୍ଠ ସାମ୍ପ୍ରଦାୟିକତାକୁ ଖୋରାକ ଯୋଗାଉଥିବା କହିଥିଲେ ।

ରଣଦିଭେ ଟ୍ରେଡ଼ ୟୁନିୟନ ଏକତା ଉପରେ ଜାତିବାଦର ମାରାତ୍ମକ ବିପଦକୁ ମଧ୍ୟ ସମାଲୋଚନା କରିଥିଲେ । ଟ୍ରେଡ଼ ୟୁନିୟନ ଗୁଡ଼ିକରେ ଜାତିବାଦର କୁପ୍ରଭାବ ବିରୁଦ୍ଧରେ ସଂଗ୍ରାମ ଜରୁରୀ ଅଟେ । “ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ଚେଷ୍ଟା ସତ୍ୱେ ଧର୍ମଘଟ ବେଳେ ଟ୍ରେଡ଼ ୟୁନିୟନମାନେ ସଫଳତାର ସହ ଏକତା ପ୍ରତିଷ୍ଠା କରିଥାନ୍ତି । କିନ୍ତୁ ଏହି ଏକତା ନଗଦ ଅର୍ଥନୈତିକ ଦାବି ଭିତ୍ତିରେ ଗଢ଼ି ଉଠିଲେହେଁ ଏହା ପ୍ରତିକ୍ରିୟାଶୀଳମାନଙ୍କ ଆକ୍ରମଣ ତୁଳନାରେ ଯଥେଷ୍ଟ ନୁହେଁ । ଏହି ଏକତାକୁ ଭିତ୍ତିକରି ଶ୍ରମିକଶ୍ରେଣୀ ରାଜନୈତିକ ଭାବେ ବିଭେଦକାରୀ ଶକ୍ତିମାନଙ୍କ ଆକ୍ରମଣକୁ ମୁକାବିଲା କରିବା ଦରକାର । ଏପରିକାମ ସାମ୍ପ୍ରଦାୟିକ ଦଙ୍ଗା ବେଳେ ପଶ୍ଚିମବଙ୍ଗରେ ସମ୍ଭବପର ହୋଇପାରିଛି । ପ୍ରତିକ୍ରୀୟାଶୀଳ ଶକ୍ତିମାନଙ୍କ ଘୃଣ୍ୟ ଆକ୍ରମଣକୁ

ଶ୍ରମିକମାନଙ୍କ ପାଖରେ ରହି ରାଜନୈତିକଭାବେ ବୁଝାଇବା ଏବଂ ଐକ୍ୟବଦ୍ଧ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଅସ୍ତ୍ର ସାହାଯ୍ୟରେ ଜନସାଧାରଣଙ୍କ ଭିତରେ ରହି ବିଭେଦକାରୀ ଆକ୍ରମଣକୁ ମୁକାବିଲା କରିବା ଦରକାର ।"

## ପଶ୍ଚିମବଙ୍ଗର ବାମଫ୍ରଣ୍ଟ ସରକାର

ପଶ୍ଚିମବଙ୍ଗ, କେରଳ ଓ ତ୍ରୀପୁରାର ବାମଫ୍ରଣ୍ଟ ସରକାରକୁ ରକ୍ଷା କରିବା ପାଇଁ ବି.ଟି.ଆର. ଶ୍ରମିକ ଶ୍ରେଣୀକୁ ଡାକରା ଦେଇଥିଲେ । ଏ ଗୁଡ଼ିକୁ "ଗଣତନ୍ତ୍ରର ଆଗୁଆ ମାଇଲ ଖୁଣ୍ଟ" ଭାବେ ଅଭିହିତ କରିଥିଲେ ।

"ବାମଫ୍ରଣ୍ଟ ସରକାରକୁ ରକ୍ଷାକର" ଶିରୋନାମାରେ ୧୯୮୧ରେ ଲେଖିଥିବା ଲେଖାରେ ବାମଫ୍ରଣ୍ଟ ସରକାର ଗୁଡ଼ିକର ସଫଳତାକୁ ବୟାନ କରିଥିଲେ । ସେ କହିଥିଲେ : "ଏହି ସରକାରମାନେ ସାଧାରଣ ମଣିଷଙ୍କ ସ୍ୱାର୍ଥକୁ ଅତ୍ୟନ୍ତ ବିଶ୍ୱସ୍ତଭାବେ ରକ୍ଷା କରୁଛନ୍ତି । ସେମାନେ ଗଣତାନ୍ତ୍ରିକ ଅଧିକାରକୁ ସୁରକ୍ଷା କରିବା ସହ ଶୋଷିତ ମଣିଷମାନଙ୍କ ଲଢ଼େଇ ସପକ୍ଷରେ ସରକାରକୁ ଚଳାଉଛନ୍ତି । କେନ୍ଦ୍ର ସରକାରଙ୍କ ଯାବତୀୟ ଆର୍ଥିକ କଟକଣା ସତ୍ତ୍ୱେ, ଏହି ତିନୋଟି ଯାକ ସରକାର ସାଧାରଣ ମଣିଷମାନଙ୍କୁ ନ୍ୟାୟ ପ୍ରଦାନ କରିବା ସହ ଗଣତନ୍ତ୍ରକୁ ସୁରକ୍ଷା ପ୍ରଦାନ କରୁଛନ୍ତି । ସେମାନେ ଜାତୀୟ ନିରାପତ୍ତା ଆଇନ ତଥା ଅନ୍ୟାନ୍ୟ ପ୍ରକାରର ଅଟକ ଆଇନ ବ୍ୟବହାର ପାଇଁ ରାଜି ହୋଇ ନାହାନ୍ତି ।"

"ବାମଫ୍ରଣ୍ଟ ସରକାରମାନେ ଜନଗଣଙ୍କ ଅଧିକାର ଓ ସ୍ୱାର୍ଥକୁ ଅଗ୍ରାଧିକାର ପ୍ରଦାନ କରୁଛନ୍ତି । କେବେହେଲେ ଶ୍ରମିକ ଶ୍ରେଣୀ ଓ ମେହନତୀ ମଣିଷମାନଙ୍କ ଉପରେ ପୁଞ୍ଜିବାଦୀ ସଙ୍କଟର ବୋଝ ଲଦି ଦେବା ପାଇଁ ଚେଷ୍ଟା କରିନାହାନ୍ତି - "ବାମଫ୍ରଣ୍ଟ ସରକାରମାନଙ୍କ ଶାସନରେ ସଂଖ୍ୟାଲଘୁ ମୁସଲମାନ ଓ ହରିଜନମାନେ ସର୍ବାଧିକ ସୁରକ୍ଷିତ ରହିପାରିଛନ୍ତି । କେଉଁଠି ହେଲେ ସାମ୍ପ୍ରଦାୟିକ ଦଙ୍ଗା ଘଟିନାହିଁ ଏବଂ ଏହା ପରିବର୍ତ୍ତେ ସାଧାରଣ ସଂଗ୍ରାମ ବେଳେ ସାମ୍ପ୍ରଦାୟିକ ସୌହାର୍ଦ୍ଦ ପ୍ରତିଷ୍ଠିତ ହୋଇଛି । ହରିଜନମାନଙ୍କ ଉପରେ ଅତ୍ୟାଚର ଘଟଣା ଘଟୁନାହିଁ । ଶ୍ରମିକମାନଙ୍କ ଧର୍ମଘଟ ଅଧିକାରକୁ ସୁରକ୍ଷା ପ୍ରଦାନ କରାଯାଉଛି ଏବଂ ସରକାରୀ କର୍ମଚାରୀମାନଙ୍କ କ୍ଷେତ୍ରରେ ମଧ୍ୟ ଏପରି କରାଯାଉଛି । ଧର୍ମଘଟକାରୀ ଶ୍ରମିକମାନଙ୍କ ବିରୁଦ୍ଧରେ ଗୁଳି ଚାଳନା କରାଯାଉନାହିଁ । ପୋଲିସ୍ ପ୍ରଶାସନକୁ ପୁଞ୍ଜିପତିମାନଙ୍କ ସମର୍ଥନରେ ଶ୍ରମିକ ଓ ଜନଗଣଙ୍କ ବିରୁଦ୍ଧରେ ବ୍ୟବହାର କରାଯାଉନାହିଁ । ଭାଗଚାଷୀ, କୃଷି ଶ୍ରମିକ ଓ କୃଷକମାନଙ୍କ ସ୍ୱାର୍ଥକୁ ସମ୍ପୂର୍ଣ୍ଣଭାବେ ରକ୍ଷା କରାଯାଉଛି । କର୍ମଚାରୀ ଓ ଶ୍ରମିକ ମାନେ ଗଣତାନ୍ତ୍ରିକ ପରିବେଶ ଯୋଗୁ ଶାନ୍ତିରେ ନିଶ୍ୱାସ ମାରିପାରୁଛନ୍ତି ।

"ଜନଗଣଙ୍କ ସ୍ୱାର୍ଥ ରକ୍ଷା ପାଇଁ ଏହି ସରକାରମାନେ ନିର୍ଦ୍ଦିଷ୍ଟ ପଦକ୍ଷେପ ନେଉଥିବାରୁ ପୁଞ୍ଜିପତି ଜମିଦାର ଶ୍ରେଣୀ ଓ ତାଙ୍କର ପ୍ରତିନିଧି କଂଗ୍ରେସ ଓ କେନ୍ଦ୍ର ସରକାର କ୍ଷୁବ୍ଧ ହେଉଛନ୍ତି । ଜନସାଧାରଣଙ୍କ ମୁଣ୍ଡ ଉପରେ ସଂକଟ ବୋଝ ଲଦିବା ପରିବର୍ତ୍ତେ ଏ ସରକାର ମାନେ ରିହାତି ପ୍ରଦାନ କରୁଥିବାରୁ ସେମାନଙ୍କ କ୍ରୋଧ ବଢୁଛି ।"

କାରଣ ବାମଫ୍ରଣ୍ଟ ସରକାରମାନେ ପୁଞ୍ଜିବାଦୀ ବ୍ୟବସ୍ଥା ଭିତରେ ରହି କାମ କଲାବେଳେ ସେ ସବୁ ରାଜ୍ୟରେ ଶ୍ରେଣୀ ସଂଗ୍ରାମ ଅବ୍ୟାହତ ରହିଛି । ଏହା ଦୃଢ଼ ଓ ପ୍ରଭାବଶାଳୀ ପାଲଟୁଛି । ସି.ଆଇ.ଟି.ୟୁର ପ୍ରତ୍ୟେକ ମିଟିଂରେ ଶ୍ରମିକଶ୍ରେଣୀକୁ ବାମଫ୍ରଣ୍ଟ ସରକାର ଗୁଡ଼ିକର ରକ୍ଷା ଅର୍ଥ ଦେଶରେ ଗଣତନ୍ତ୍ରର ରକ୍ଷା ବୋଲି ଅବହିତ କରିଥିଲେ ।

"ଗଣତନ୍ତ୍ର ରକ୍ଷାର ଛାମୁଆ ବାହିନୀ ଭାବେ ଶ୍ରମିକ ଶ୍ରେଣୀ ତା'ର ସମସ୍ତ ଶକ୍ତି ଏହି ମନ୍ତ୍ରୀମଣ୍ଡଳ ଗୁଡ଼ିକୁ ରକ୍ଷା ପାଇଁ ବିନିଯୋଗ କରିବା ଦରକାର ଏବଂ ଏକଛତ୍ରବାଦୀ ଶକ୍ତିର ଆହ୍ୱାନକୁ ମୁକାବିଲା କରିବା ଦରକାର ।"

## ବେକାର ମାନଙ୍କ ସମ୍ପର୍କରେ

ଦେଶରେ ବୃଦ୍ଧି ପାଉଥିବା ବେକାରୀ ବିରୁଦ୍ଧରେ ନିରନ୍ତର ସଂଗ୍ରାମର ଜରୁରୀ ଆବଶ୍ୟକତା ଉପରେ ବି.ଟି.ଆର ଜୋର ଦେଇଥିଲେ । ପୁଞ୍ଜିବାଦୀ ବ୍ୟବସ୍ଥାରେ ବେକାରି ସମସ୍ୟା ଦିନୁ ଦିନ ବଳି ପଡ଼ିବା ସ୍ୱଭାବିକ ଅଟେ । କିନ୍ତୁ, ପୁଞ୍ଜିପତି ଶ୍ରେଣୀ ସର୍ବଦା ବେକାରୀ ବୃଦ୍ଧିକୁ ଲୁଚାଇ ଥାଏ ଏଣୁ ସେ ଅତ୍ୟନ୍ତ କଟୁ ଭାଷାରେ ଯୋଜନା କମିଶନ ଓ ଭାରତ ସରକାରଙ୍କୁ ସମାଲୋଚନା କରିଥିଲେ :

"ବେକାର ସଂଖ୍ୟା ଏପରି ବଢ଼ିଛି ଯେ ଉଭୟ କେନ୍ଦ୍ର ସରକାର ଓ ଯୋଜନା କମିଶନ ବିଭିନ୍ନ ବାହାନାରେ ଏହାର ଅସଲ ଚେହେରା ଲୁଚାଉଛନ୍ତି । ଯୋଜନା କମିଶନର ପୂର୍ବ ରିପୋର୍ଟରେ ପୂର୍ବର ବେକାର ସଂଖ୍ୟା ଓ ଯୋଜନା କାଳର ଶେଷ ବେଳର ସଂଖ୍ୟାକୁ ପ୍ରତିଯୋଜନାର ସଂଖ୍ୟାଗତ ଭାବେ ନିଯୁକ୍ତି ଯୋଗେଇବା ଲକ୍ଷ ଭାବରେ ବିବରଣୀ ଦେଇ ବେକାର ସମସ୍ୟା ସମାଧାନ କରୁଥିବା ଦର୍ଶାଇଥାନ୍ତି । ପ୍ରତ୍ୟେକ ଯୋଜନାକାଳରେ ବେକାର ସମସ୍ୟା ଦକ୍ଷତା ସହିତ ସମାଧାନ କରୁଥିବା କୁହାଯାଏ କିନ୍ତୁ ବିଶାଳ ସଂଖ୍ୟକ ବେକାର ଏହା ସତ୍ତ୍ୱେ ରହିଯାନ୍ତି । ସେମାନଙ୍କର ଏ ତଥ୍ୟ ମିଥ୍ୟା ବିବେଚିତ ହେଉଥିବା ଅନୁଭବ କରି ସରକାର ଓ ଯୋଜନା କମିଶନ ବେକାରୀର ନିର୍ଦ୍ଦିଷ୍ଟ ସଂଜ୍ଞା ନଥିବା କୁହନ୍ତି, ଏବଂ ବେକାରୀର କୌଣସି ନିର୍ଦ୍ଦିଷ୍ଟ ହିସାବ ମିଳିନଥାଏ ।"

ବେକାରୀ ପୁଞ୍ଜିବାଦୀ ବ୍ୟବସ୍ଥାର ପତ୍ୟେକ୍ଷ ଫସଲ ଅଟେ । ବି.ଟି.ଆରଙ୍କ ଭାଷାରେ, ପୁଞ୍ଜିବାଦୀ ସମାଜ ବିଲୋପ ନହେଲେ ବେକାରୀ ସମସ୍ୟା ସମାଧାନ ହେବ ନାହିଁ । "ଭାରତର ପୁଞ୍ଜିପତି ଶ୍ରେଣୀ ଦେଶକୁ ପୁଞ୍ଜିବାଦୀ ମାର୍ଗରେ ପରିଚାଳିତ କରୁଛି । ତେଣୁ, ପୁଞ୍ଜିବାଦୀ ସମାଜର ନିୟମ ପୁରୁଣା ଅର୍ଥନୈତିକ ସମ୍ପର୍କ ଉପରେ ଲଦି ହୋଇ ଦିନକୁ ଦିନ ମାରାତ୍ମକ ପରିସ୍ଥିତି ସୃଷ୍ଟି କରୁଛି । ପୁଞ୍ଜିବାଦର ମୁଖ୍ୟ ପରିଣତି ତଥା ପୁଞ୍ଜିବାଦୀ ସଞ୍ଚରଣରୁ ହିଁ ବେକାରୀ ବୃଦ୍ଧି ହେଉଛି । ବିଶ୍ୱର କୌଣସି ଗୋଟିଏ ହେଲେ ପୁଞ୍ଜିବାଦୀ ଦେଶ ବେକାରୀ ଅବସ୍ଥାରୁ ମୁକୁଳି ପାରିନାହାନ୍ତି ।"

"ପ୍ରତିଯୋଗିତା ବଜାରରେ, ପୁଞ୍ଜିପତି ବା ପ୍ରତ୍ୟେକ ପ୍ରତିଯୋଗୀ ଦେଶ ଶ୍ରମିକମାନଙ୍କୁ ଲୁଣ୍ଠନ କରି ପରସ୍ପର ମଧ୍ୟରେ ଅଧିକ ଲାଭ ରୋଜଗାର ପାଇଁ ଚେଷ୍ଟା କରିଥାନ୍ତି । ଶ୍ରମିକକୁ କାମ ଦେଇ ବଜାରରେ କିପରି ଅଧିକ ବିକ୍ରି କରିବେ ଓ ଲାଭ ରୋଜଗାର କରିବେ ଏହା ପ୍ରତିଯୋଗୀତାର ମୁଖ୍ୟ ଲକ୍ଷ ପାଲଟିଥାଏ । ଆଧୁନିକ ଉତ୍ପାଦନ ବ୍ୟବସ୍ଥାରେ କିପରି ଅଧିକରୁ ଅଧିକ ପୁଞ୍ଜି କମ୍ ରୁ କମ ଶ୍ରମିକ ଖଟେଇ ଲାଭ ରୋଜଗାର ହେବ ତଥା ଉତ୍ପାଦିକତା ବୃଦ୍ଧିର ଝୁଁକ୍‌ରେ ଶ୍ରମ ନିୟୋଜନ ହ୍ରାସ ଘଟେଇ ଶ୍ରମିକମାନଙ୍କୁ ବେକାରରେ ପରିଣତ କରିଯାଏ ।"

ବେକାରୀମାନଙ୍କୁ ଉପଯୁକ୍ତ ରିହାତି ସମେତ ବେକାରୀ ଭତ୍ତା ପ୍ରଦାନ କରାଯିବା ଆବଶ୍ୟକତା ଉପରେ ବି.ଟି.ଆର ଜୋର ଦେଇଥିଲେ । ବେକାରୀ ଭତ୍ତା କିନ୍ତୁ ବେକାରୀ ସମସ୍ୟାର ଉପଯୁକ୍ତ ସମାଧାନ ଭାବେ ବିଚାର କରିବା ଅନୁଚିତ୍ । ତେଣୁ ସେ ମଜୁରୀ ହ୍ରାସ ନକରି କାମକରିବାର ସମୟ କମ କରିବା ସମାଧାନର ଅନ୍ୟତମ ପନ୍ଥା ବୋଲି ଦର୍ଶାଇଥିଲେ । ଲକ୍-ଆଉଟ୍ ଓ କ୍ଲୋଜର ବିରୁଦ୍ଧରେ ସଂଗ୍ରାମକୁ ମଧ୍ୟ ସେ ବେକାର ବିରୋଧି ସଂଗ୍ରାମ ଅଂଶ ବିଶେଷ ମନେ କରୁଥିଲେ । ଗ୍ରାମାଞ୍ଚଳରେ ପ୍ରକୃତ ଭୂସଂସ୍କାର ଜରିଆରେ ମଧ୍ୟ ବେକାର ସମସ୍ୟା ସମାଧାନ କରିହେବ । ସରକାରଙ୍କ ପକ୍ଷରୁ ସର୍ବସାଧାରଣ ବ୍ୟୟ ବୃଦ୍ଧି କରି କିଛି ପରିମାଣ ରେ ବେକାରଙ୍କ କାମ ଯୋଗେଇ ଦେଇ ହେବ ଏବଂ ବେକାରଙ୍କୁ ଅହେତୁକ ଅନୁକମ୍ପା ମୂଳକ ଭତ୍ତା ପ୍ରଦାନକୁ ସେ ବିରୋଧ କରୁଥିଲେ । ରଣଦିଭେ ବେକାରୀ ବିରୁଦ୍ଧରେ ବରଂ ସଂଗ୍ରାମ ଓ ଅଧିକ ନିଯୁକ୍ତି ସୃଷ୍ଟି ପାଇଁ କାର୍ଯ୍ୟକ୍ରମ ଉପରେ ଜୋର ଦେଇଥିଲେ ।

## ସରକାରୀ କର୍ମଚାରୀ ଓ ଜନସାଧାରଣ

କେନ୍ଦ୍ର ଓ ରାଜ୍ୟ ସରକାରୀ କର୍ମଚାରୀମାନଙ୍କୁ ଟ୍ରେଡ଼୍ ୟୁନିୟନ ଓ ରାଜନୈତିକ ଅଧିକାର ପ୍ରଦାନ ପାଇଁ ବି.ଟି. ରଣଦିଭେ ଦାବି କରିଥିଲେ । ଜନଗଣତାନ୍ତ୍ରିକ ବିପ୍ଳବ ଓ ସମାଜବାଦ ପ୍ରତିଷ୍ଠା ପଥରେ ସରକାରୀ କର୍ମଚାରୀମାନଙ୍କୁ ଶ୍ରମିକ ଶ୍ରେଣୀର ଅଂଶ ବିଶେଷ ଭାବେ ବି.ଟି. ରଣଦିଭେ ବିଚାର କରୁଥିଲେ । କେନ୍ଦ୍ର ଓ ରାଜ୍ୟ ସରକାରୀ କର୍ମଚାରୀମାନଙ୍କୁ ସେମାନଙ୍କ ଦାବି ଦୁବା ଉପରେ ଯୌଥ ଦର କଷାକଷିର ଅଧିକାର ପ୍ରଦାନ ଏବଂ ରାଜିନାମା ଦସ୍ତଖତ କରିବାର ଅଧିକାର ପ୍ରଦାନ ଦାବି ଉଠାଇଥିଲେ ।

"ରାଜନୈତିକ ବକ୍ତବ୍ୟ ଓ କାର୍ଯ୍ୟକ୍ରମରୁ ବଞ୍ଚିତ କରି କେନ୍ଦ୍ର ଓ ରାଜ୍ୟ ସରକାର କର୍ମଚାରୀମାନଙ୍କୁ ବସ୍ତୁତଃ ଦ୍ୱିତୀୟ ଶ୍ରେଣୀ ନାଗରିକରେ ପରିଣତ କରାଯାଇଛି । ସେମାନଙ୍କ ନଗଦ ଆନ୍ଦୋଳନ ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିଥାଏ । ମୁଖ୍ୟତ ଟ୍ରେଡ଼୍ ୟୁନିୟନ ସଂଗଠନ ଗୁଡ଼ିକଠାରୁ ଦୂରେଇ ରହିବା ପାଇଁ ସେମାନଙ୍କୁ ବାଧ୍ୟ କରାଯାଏ ଏବଂ ଏକୁଟିଆ ଚାଲିବାକୁ ବାଧ୍ୟ କରାଯାଇଥାଏ । ସେମାନେ ଟ୍ରେଡ଼୍ ୟୁନିୟନମାନଙ୍କ ସାଧାରଣ ଆନ୍ଦୋଳନରେ ଯୋଗ ଦେଇ ପାରନ୍ତିନାହିଁ ।

ବି.ଟି. ରଣଦିଭେ ସରକାର ଓ ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ସୃଷ୍ଟି କରାଯାଇଥିବା ବିଭାଜନ ପ୍ରାଚୀର ସମ୍ପର୍କରେ ଉଦ୍‌ବେଗ ପ୍ରକାଶ କରିଥିଲେ । ସେମାନଙ୍କର ଯେ କୌଣସି ପ୍ରକାର ପ୍ରତିବାଦକୁ ସରକାର ଦୃଢ଼ଭାବେ ଦମନ କରିଥାନ୍ତି । ବି.ଟି. ରଣଦିଭେ ସରକାରୀ କର୍ମଚାରୀମାନଙ୍କୁ ଜନସାଧାରଣଙ୍କ ଠାରୁ ବିଚ୍ଛିନ୍ନ ନ ହେବା ପାଇଁ ପରାମର୍ଶ ଦେଇଥିଲେ । କାରଣ, "ସରକାରୀ କର୍ମଚାରୀମାନଙ୍କର ପ୍ରତ୍ୟେକ ଦାବି ସାଧାରଣ ରାଜକୋଷରୁ ଭରଣା ହୋଇଯାଏ । ତେଣୁ ସରକାର ଲୋକମାନଙ୍କୁ ବୁଝେଇଥାନ୍ତି ଯେ ଜନସାଧାରଣଙ୍କ ସ୍ୱାର୍ଥ ବିନିମୟରେ କର୍ମଚାରୀମାନେ ନିଜ ନିଜର ଦାବି ପୂରଣ କରିବାକୁ କହୁଛନ୍ତି । ଏହା ବ୍ୟତିତ, କର୍ମଚାରୀମାନେ ମଧ୍ୟ ସାଧାରଣ ମଣିଷମାନଙ୍କ ସହ ସୁସମ୍ପର୍କ ରକ୍ଷା କରନ୍ତି ନାହିଁ ଏବଂ ଏମାନଙ୍କ ଜରିଆରେ ହିଁ ପ୍ରଶାସନ ଓ ସାମାଜିକ ବ୍ୟବସ୍ଥାର କୁକାର୍ଯ୍ୟ ଲୋକମାନଙ୍କ ମୁଣ୍ଡ ଉପରେ ଲଦି ଦିଆଯାଇଥାଏ । ପ୍ରଶାସନିକ କୁକାର୍ଯ୍ୟରେ ସେମାନେ ନିରୀହ ମାଧ୍ୟମ ପାଲଟିଥାନ୍ତି । ସେମାନଙ୍କ ମଧ୍ୟରୁ କେତେଜଣ ଜନସାଧାରଙ୍କ ସହାନୁଭୂତି ଅର୍ଜନ କରିବା ପରିବର୍ତ୍ତେ ସେମାନଙ୍କ ବ୍ୟବହାର ଫଳରେ ଜନସାଧାରଣଙ୍କ ଠାରୁ ବିଚ୍ଛିନ୍ନ ହୋଇଥାନ୍ତି । ଲୋକମାନଙ୍କ ସହ ସୃଷ୍ଟି ହେଉଥିବା ବ୍ୟବଧାନ ବଜାୟ ରହିଲେ, ଜନସାଧାରଣଙ୍କ ଦୁର୍ଦ୍ଦଶା ପ୍ରତି ସହୃଦୟତାର ଅଭାବ କର୍ମଚାରୀମାନଙ୍କ ଆନ୍ଦୋଳନ ପାଇଁ ମହଙ୍ଗା ସାବ୍ୟସ୍ତ ହେବ ।"

ବି.ଟି. ରଣଦିଭେ ସରକାରୀ କର୍ମଚାରୀ ମାନଙ୍କୁ ପ୍ରଶ୍ନ କରିଥିଲେ : "କର୍ମଚାରୀମାନଙ୍କ ସର୍ବନିମ୍ନ ଅଧିକାରକୁ କିଏ ରକ୍ଷା କରିବ ଯଦି ସେମାନଙ୍କ ପାଇଁ ଜନସାଧାରଣଙ୍କ ସମର୍ଥନ ମିଳିବ ନାହିଁ ?

ତେଣୁ ସେ ଡାକରା ଦେଇ କହିଥିଲେ, "ରାଜ୍ୟ ଓ କେନ୍ଦ୍ର ସରକାରୀ କର୍ମଚାରୀ ଅତିତ ବନ୍ଧନରୁ ନିଜକୁ ମୁକ୍ତ କରନ୍ତୁ, ଦୃଢ଼ ଏକତା, ଜନସାଧାରଣ ସହାନୁଭୂତି ନିଜ ଦାବି ପାଇଁ ଅର୍ଜନ କରନ୍ତୁ; ସମାଜବାଦ ଲକ୍ଷ ହାସଲ ପାଇଁ ଗଣତାନ୍ତ୍ରିକ ଓ ଜନ ଆନ୍ଦୋଳନର ଅଂଶ ବିଶେଷ ଭାବେ ନିଜକୁ ସଂଗଠିତ କରନ୍ତୁ ।"

## ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ

ବି.ଟି. ରଣଦିଭେ ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନର ଦୃଢ଼ ପ୍ରବକ୍ତା ଥିଲେ । ଟ୍ରେଡ୍ ୟୁନିୟନ ବହୁଳତା ଟ୍ରେଡ୍ ୟୁନିୟନ ଆନ୍ଦୋଳନର ଆଭ୍ୟନ୍ତରୀଣ ସମସ୍ୟା ଏବଂ ଏହା ଉପଯୁକ୍ତ ବିଚାର ଆଲୋଚନା ଜରିଆରେ ସମାଧାନ କରିବା ପାଇଁ ସେ କହିଥିଲେ । ପୁଞ୍ଜିପତି ସମ୍ବାଦ ସଂସ୍ଥାମାନଙ୍କର ୟୁନିୟନ ବହୁଳତା ସମସ୍ୟା ଉପରେ କୁମ୍ଭୀର କାନ୍ଦଣାକୁ ସେ ନିନ୍ଦା କରିଥିଲେ । ସେ କହିଥିଲେ, ୟୁନିୟନ ସଂଗଠନର ବହୁଳତା ସତ୍ତ୍ୱେ ଶ୍ରମିକମାନେ ଅର୍ଥନୈତିକ ଦୁର୍ଗତି ଦାୟରେ ହିଁ ଆନ୍ଦୋଳନ ମୁଖୀ ହୋଇଥାନ୍ତି । ତଥାପି ସେ ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଠନ ଉପରେ ଜୋର ଦେଇ କହିଥିଲେ :

"ଟ୍ରେଡ୍ ୟୁନିୟନ ଆନ୍ଦୋଳନ ପାଇଁ ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଠନ ଯୁକ୍ତି ପଛରେ ଅତ୍ୟନ୍ତ ସ୍ପଷ୍ଟ କାରଣମାନ ରହିଛି । ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଶ୍ରମିକ ଶ୍ରେଣୀର ଏକତା ପାଇଁ ଗଠିତ ହୋଇଥାଏ ଏବଂ ଏହାର ଶକ୍ତି ଶ୍ରମିକମାନଙ୍କ ଉପରେ ପ୍ରଭାବର କ୍ଷମତା ଉପରେ ନିର୍ଭର କରେ । ଯେଉଁ ୟୁନିୟନ ପତାକା ତଳେ ସଂଖ୍ୟା ଗରିଷ୍ଠ ଶ୍ରମିକ ସମର୍ଥନ ରହିଛି ଯୌଥ ଦରକଷା କଷି ବେଳେ ସେ ୟୁନିୟନ ଶକ୍ତିଶାଳୀ ହୋଇଥାଏ ଓ ଅଭ୍ୟନ୍ତରୀଣ ବିଭେଦ ସହ ଲଢ଼ିବାର କ୍ଷମତା ଅର୍ଜନ କରିଥାଏ । ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଠନର ଯୁକ୍ତି ସେଠାରେ ଶ୍ରମିକମାନଙ୍କ ସାଧାରଣ ଆଗ୍ରହ ଉପରେ ନିର୍ଭର କରିବ ଏବଂ ଏହି ଏକକ ୟୁନିୟନ ଗୋଟିଏ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ ଅଧିନରେ ରହିବା ଦରକାର ।"

ରଣଦିଭେ ଆଜି ଦିନରେ ଟ୍ରେଡ୍ ୟୁନିୟନ ମାନଙ୍କମଧ୍ୟରେ ଅନୈକ୍ୟ ବିଷୟ ବିସ୍ତାର ପୂର୍ବକ ଆଲୋଚନା କରି କହିଥିଲେ : "ଆମେ କେବଳ ଚାହିଁଲେ ଏହି ଅନୈକ୍ୟ ଦୂର ହୋଇ ପାରିବ ନାହିଁ କି କୌଣସି ଆଇନ ଦ୍ୱାରା ବା ନେତାମାନଙ୍କ ମଧ୍ୟରେ ରାଜିନାମା ହୋଇ ଏପରି ଏକତା ପ୍ରତିଷ୍ଠା ହେବ ନାହିଁ ।"

ଟ୍ରେଡ୍ ୟୁନିୟନ ଶ୍ରମିକମାନଙ୍କ ପ୍ରତିରୋଧ ଗଢ଼ି ତୋଳିବା ବେଳେ ସକଳ ଶକ୍ତିର କେନ୍ଦ୍ର ବିନ୍ଦୁ ପାଲଟିଥାଏ; ଧର୍ମଘଟ ବେଳେ ଶ୍ରମିକମାନଙ୍କ ଐକବଦ୍ଧ ହତିଆର ପାଲଟିଲା ବେଳେ ଅନ୍ୟ ସମୟରେ ଦୁର୍ବଳ ଓ ପ୍ରଭାବଶୂନ୍ୟ ପାଲଟିଥାଏ ।

ବି.ଟି. ରଣଦିଭେଙ୍କ କଥାରେ - "ଏହି କାରଣରୁ ହିଁ ଗୋଟିଏ ଶିଳ୍ପରେ ଗୋଟିଏ କାରଖାନାରେ ଏକାଧିକ ୟୁନିୟନମାନ ଗଢ଼ି ଉଠନ୍ତି । ବିଭିନ୍ନ ଦଳମାନଙ୍କ ଦ୍ୱାରା କାରଖାନା ସ୍ଥଳରେ ଭିନ୍ନ ଭିନ୍ନ ୟୁନିୟନ ଗଠନ କରିବା ସମ୍ଭବପର ହୋଇଥାଏ । ଅନ୍ୟଥା ଶ୍ରମିକମାନେ ଗୋଟିଏ ୟୁନିୟନରେ ହିଁ ଏକଜୁଟ ହୋଇ ପାରନ୍ତେ ।"

"ଏହାର ଅନ୍ୟଏକ କାରଣ ହେଉଛି ଟ୍ରେଡ୍ ୟୁନିୟନ ନେତାମାନଙ୍କ ଦୃଷ୍ଟଭଙ୍ଗି, ସେମାନେ ନିଜ ଠାରୁ ଭିନ୍ନମତ ପୋଷଣ କରୁଥିବା ଲୋକକୁ ଅଲଗା କରିଦିଅନ୍ତି । ଏଥି ସାଙ୍ଗକୁ ଶ୍ରମିକମାନେ ମଧ୍ୟ ଭାଗ ଭାଗ ହୋଇ ଯାଆନ୍ତି । ଏପରି ନେତାମାନେ ୟୁନିୟନକୁ ଅମଲାତାନ୍ତ୍ରିକ ଢଙ୍ଗରେ ପରିଚାଳନା କରନ୍ତି ଏବଂ ମନମୁଖୀ ଭାବେ ଭିନ୍ନ ମତ ପୋଷଣ କରୁଥିବା ଏବଂ ଅସନ୍ତୁଷ୍ଟ ଶ୍ରମିକମାନଙ୍କୁ ଅଲଗା କରିଦିଅନ୍ତି ।"

ବି.ଟି. ରଣଦିଭେଙ୍କ ବିଚାରରେ କେବଳ ସାଧାରଣ ସ୍ୱାର୍ଥ ଉପରେ ମିଳିତ ସଂଗ୍ରାମ ଓ ଟ୍ରେଡ୍ ୟୁନିୟନ ସଲିଡ଼ାରିଟି ତଥା ସଂହତି ଶ୍ରମିକ ଶ୍ରେଣୀକୁ ସମ୍ପୂର୍ଣ୍ଣଭାବେ ଏକଜୁଟ କରିପାରିବ । ସେ ଟ୍ରେଡ୍ ୟୁନିୟନମାନଙ୍କ ଗଣତାନ୍ତ୍ରିକ ପରିଚାଳନା ଉପରେ ଜୋର ଦେଇଥିଲେ । ଏହା ହିଁ ଶ୍ରମିକ ଶ୍ରେଣୀ ମଧ୍ୟରେ ଏକତା ପ୍ରତିଷ୍ଠାର ପୂର୍ବ ସର୍ତ୍ତାବଳୀ ଭାବେ ବିଚାର କରିଥିଲେ ।

ସେ ଜାଣିଥିଲେ ଯେ ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଏକ ଦୀର୍ଘକାଳ ବ୍ୟାପୀ ସଂଗ୍ରାମ । ତେଣୁ ଏହି ଲକ୍ଷ୍ୟ ହାସଲ ପାଇଁ ନଗଦ ପରିସ୍ଥିତିରେ କେତେକ ଜରୁରୀ ପଦକ୍ଷେପ ଅନୁସରଣ ପାଇଁ ପରାମର୍ଶ ଦେଇଥିଲେ । ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଗଠନ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବା ପାଇଁ କାମ କଲାବେଳେ, ଏହି ଜରୁରୀ ପଦକ୍ଷେପ ଗୁଡ଼ିକ ଏକତା ପ୍ରତିଷ୍ଠା ପାଇଁ ଆବଶ୍ୟକ ଅଟେ :

॥ କ ॥ "ଟ୍ରେଡ୍ ୟୁନିୟନ ସ୍ୱୀକୃତି ଅତିଶୀଘ୍ର ଗୁପ୍ତ ଭୋଟ ଦ୍ୱାରା ସ୍ଥିର ହେବା ଦରକାର । ଏହି ଗୁପ୍ତଭୋଟ ଫ୍ୟାକ୍ଟ୍ରି ସ୍ତରରେ କିମ୍ବା ସମୂଦାୟ ସଂସ୍ଥା କିମ୍ବା ସମଗ୍ର ଶିଳ୍ପକୁ ଘେରି ହେବ । ଯଦି କୌଣସି ୟୁନିୟନ ସର୍ବାଧିକ ସଂଖ୍ୟା ଗରିଷ୍ଠ ହେଲା (ଏହାର ଭାଗ ସ୍ଥିର କରାଯାଇପାରିବ) ତେବେ କେବଳ ସେହି ୟୁନିୟନ ହିଁ ଯୌଥ ଦରକଷା କଷି କରି ପାରିବ । ଅନ୍ୟ ୟୁନିୟନମାନେ ନିଜ କାର୍ଯ୍ୟକଳାପ ଜାରି ରଖିବା ଅଧିକାର ରହିବ । ସେମାନେ ସଭ୍ୟ ସଂଗ୍ରହ କରିପାରିବେ ଓ ବିଭିନ୍ନ ବ୍ୟକ୍ତିଗତ ଅଭିଯୋଗ ନେଇ ପ୍ରତିନିଧିତ୍ୱ କରିପାରିବେ ।"

॥ ଖ ॥ "ଯେତେବେଳେ କୌଣସି ୟୁନିୟନ ସର୍ବାଧିକ ଭୋଟ ପାଇବେ ନାହିଁ, ସର୍ବନିମ୍ନ ସମର୍ଥନରୁ ଅଧିକ ସମର୍ଥନ ନଥିବ, ସେ କ୍ଷେତ୍ରରେ ୟୁନିୟନମାନଙ୍କ ସଂଯୁକ୍ତ କମିଟି ସମର୍ଥନ ସଂଖ୍ୟା ଭିତ୍ତିରେ ପ୍ରତିନିଧିତ୍ୱକୁ ନେଇ ଯୌଥ ଦର କଷା କଷି କରି ପାରିବେ ଏବଂ ଶ୍ରମିକମାନଙ୍କୁ ପ୍ରତିନିଧିତ୍ୱ କରିପାରିବେ ।"

॥ ଗ ॥ "ସ୍ୱୀକୃତିପ୍ରାପ୍ତ ୟୁନିୟନ ବା କୋ-ଅର୍ଡିନେସନ କମିଟି ଯୋଗେ ସ୍ୱାକ୍ଷରିତ ଚୁକ୍ତିପତ୍ର ସେତେବେଳେ ହିଁ କାର୍ଯ୍ୟକାରୀ ହେବ, ଯେତବେଳେ ଏହା ସପକ୍ଷ ଓ ବିପକ୍ଷରେ ଶ୍ରମିକ ଭୋଟ ଦେଇ ବହୁମତରେ ଅନୁମୋଦନ କରିବେ ।"

॥ ଘ ॥ "ଯୌଥ ଦର କଷା କଷି ପାଇଁ ସେ ସବୁ ୟୁନିୟନମାନେ ହିଁ କେବଳ ଯୋଗ୍ୟ ବିବେଚିତ ହେବେ ଯେଉଁମାନେ ଗଣତାନ୍ତ୍ରିକ ଭାବେ ପରିଚାଳିତ ହେଉଥିବେ ଏବଂ ଉପଯୁକ୍ତ ସମ୍ବିଧାନ ରହିଥିବ । ଯଦି ଶ୍ରମିକ ଶ୍ରେଣୀ ଏହି ବାଟରେ ପରିଚାଳିତ ହେବେ, ସେତେବେଳେ ହିଁ ଗୋଟିଏ ଶିଳ୍ପରେ ଗୋଟିଏ ୟୁନିୟନ ଲକ୍ଷ୍ୟ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ବିରୋଧୀ ମାନଙ୍କ ଚିନ୍ତାର ବ୍ୟତିକ୍ରମ ଭାବେ ଶୀଘ୍ର ହାସଲ କରାଯାଇ ପାରିବ ଏବଂ ଟ୍ରେଡ୍ ୟୁନିୟନ ମାନେ ଶ୍ରମିକ ଶ୍ରେଣୀ ଓ ଜନଗଣଙ୍କ ଅପ୍ରତିଦ୍ୱନ୍ଦି ଶକ୍ତି ଭାବେ ଉଭା ହୋଇ ପାରିବେ ।"

## ଟ୍ରେଡ୍ ୟୁନିୟନମାନଙ୍କ ମହାସମନ୍ୱୟ ସମିତି

ଟ୍ରେଡ୍ ୟୁନିୟନ ମାନଙ୍କର କନ୍‌ଫେଡ୍ରେସନ ତଥା ମହାସମନ୍ୱୟ ସମିତି ଗଠନ ବିଚାରକୁ ବି.ଟି. ରଣଦିଭେ ବିକଶିତ କରାଇଥିଲେ । ଏହା ଯୋଗେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଉପଲବ୍ଧି ସ୍ୱାର୍ଥ ରକ୍ଷା କରିବା ସାଙ୍ଗେ ସାଙ୍ଗେ ଏକ ସାଧାରଣ କର୍ମନୀତି ଅନୁସରଣ କରିପାରିବ ।ଏହି ବିଚାର ସେ ପ୍ରଥମେ ୧୯୭୯ରେ ସି.ଆଇ.ଟି.ୟୁ ୪ର୍ଥ ସମ୍ମିଳନୀରେ ପ୍ରକାଶ କରିଥିଲେ ।

ସେ ତାଙ୍କ ସଭାପତି ଉଦ୍‌ବୋଧନୀରେ କହିଥିଲେ : "କେନ୍ଦ୍ରୀୟ ଟ୍ରେଡ଼ ୟୁନିୟନମାନଙ୍କର ଏକତାବଦ୍ଧ ଆନ୍ଦୋଳନ ଏକତା ପାଇଁ ଅଭୁତପୂର୍ବ ବାତାବରଣ ସୃଷ୍ଟି କରିଛି । ସେମାନେ ବିଭିନ୍ନ କର୍ମଚାରୀ ସଂଗଠନ, କେନ୍ଦ୍ରିୟ ଟ୍ରେଡ଼ ୟୁନିୟନ ସହ ସାମିଲ ନଥିବା ଫେଡ଼େରେସନଙ୍କୁ ସାଙ୍ଗରେ ଆଣି ପାରିଛନ୍ତି ।"

ତେଣୁ ସେ ସର୍ବ ଭାରତୀୟ ସ୍ତରରେ ଶ୍ରମିକଶ୍ରେଣୀର ଟ୍ରେଡ଼ ୟୁନିୟନମାନଙ୍କ ଐକ୍ୟବଦ୍ଧ ମଞ୍ଚର ଆବଶ୍ୟକତା ଉପରେ ଜୋର ଦେଇଥିଲେ । ଏହି ଐକ୍ୟବଦ୍ଧ ମଞ୍ଚରେ କେନ୍ଦ୍ରିୟ ଟ୍ରେଡ଼ୟୁନିୟନ ସଂଗଠନ ମାନଙ୍କ ସମେତ କେନ୍ଦ୍ର-ରାଜ୍ୟ ସରକାରୀ କର୍ମଚାରୀ, ବ୍ୟାଙ୍କ ଓ ପ୍ରତିରକ୍ଷା କର୍ମଚାରୀ, ଅଫିସର ଆସୋସିଏସନ, ରାଷ୍ଟ୍ରାୟତ ସଂସ୍ଥା ଗୁଡ଼ିକର ଶ୍ରମିକ ସଂଗଠନ ଓ ବିଭିନ୍ନ ସ୍ୱାଧୀନ ଟ୍ରେଡ଼ ୟୁନିୟନ ସଂଗଠନମାନେ ମଧ୍ୟ ସାମିଲ ହୋଇ ପାରିବେ ।

ଟ୍ରେଡ଼ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ଗୁଣଗତ ଉନ୍ନତି ଘଟେଇବା ଉପରେ ରଣଦିଭେ କହିଥିଲେ : "ଆମ ଆନ୍ଦୋଳନରେ ଆଜି ଅଧିକ ଦୃଢ଼ ଓ ବ୍ୟାପକ ଭିତ୍ତିକ ଏକତା ଦରକାର କରୁଥିବା ସି.ଆଇ.ଟି.ୟୁ ଅନୁଭବ କରୁଛି । ଏହା ଆମ ଆନ୍ଦୋଳନର ପରିପକ୍ୱତାକୁ ପ୍ରକାଶ କରିଥାଏ । ବହୁ ଅନ୍ୟାନ୍ୟ ସଂଗଠନ ଶ୍ରମିକମାନଙ୍କ ଦୈନନ୍ଦିନ ସମସ୍ୟା ସହ ଜଡ଼ିତ ନୁହନ୍ତି କିନ୍ତୁ ଶ୍ରମିକମାନଙ୍କ ଆୟ ଓ ମଜୁରୀ ପ୍ରଭୃତି ନୀତିଗତ ପ୍ରଶ୍ନ ସହିତ ଜଡ଼ିତ ରହିଛନ୍ତି ।" ଟ୍ରେଡ଼ ୟୁନିୟନମାନେ ଯଦି ଶ୍ରମିକ ଓ ଦେଶର ସ୍ୱାର୍ଥ ରକ୍ଷା ପାଇଁ ଆଗ୍ରହୀ ତେବେ ସେମାନଙ୍କୁ ଏକ ସାଧାରଣ ନୀତି ତଥା ସରକାରଙ୍କ ଆମଦାନୀ ରପ୍ତାନୀ, ଅର୍ଥନୈତିକ ନୀତି ଆଦି ପ୍ରଶ୍ନ ଉପରେ ସମଧାରଣାରେ ପହଞ୍ଚିବାକୁ ପଡ଼ିବ । ଟ୍ରେଡ଼ ୟୁନିୟନମାନେ ମିଳିମିଶି ଲଗାତର ମିଳିତ ଲଢ଼େଇର ଚାପ ସୃଷ୍ଟି ନକଲେ ନୀତିଗତ ପ୍ରଶ୍ନ ଉପରେ ସଂଗ୍ରାମ ଆଗେଇ ପାରିବ ନାହିଁ ।"

ତେଣୁ ସେ ପ୍ରଶ୍ନ ଉଠାଇଥିଲେ : "ଆମେ ସମସ୍ତେ ଅନ୍ତତଃପକ୍ଷେ ଏକ ହାଲୁକା ଧରଣର ମହାସମନ୍ୱୟ ତଥା କନଫେଡ଼େରେସନ ଗଢ଼ି ପାରିବା କି ?" "କେବଳ ଆକ୍ରମଣବେଳେ ଏକାଠି ହେବା, ଅର୍ଥାତ୍ କେବଳ ବିଶେଷ ପରିସ୍ଥିତି ବେଳେ ଏକାଠି ହେବାର ଧାରା ଆଜି ପରିତ୍ୟାଗ କରାଯାଇ ପାରିବ କି ନାହିଁ ?"

୧୯୮୩ ମସିହାରେ ଅନୁଷ୍ଠିତ କାନପୁର ସି.ଆଇ.ଟି.ୟୁ ସମ୍ମିଳନୀରେ ମଧ୍ୟ ବି.ଟି. ରଣଦିଭେ ପୁଣିଥରେ ନିଜ କଥାକୁ ଦୋହରାଇଥିଲେ । ଭାତୃ ପ୍ରତିମ ପ୍ରତିନିଧିଭାବେ ଯୋଗ ଦେଇଥିବା ଏ.ଆଇ.ଟି.ୟୁ.ସି ସାଧାରଣ ସମ୍ପାଦକ ଇନ୍ଦ୍ରଜିତ ଗୁପ୍ତ । ପ୍ରତିନିଧିମାନଙ୍କ ପ୍ରତି ତାଙ୍କ ଉଦ୍‌ବୋଧନରେ ଆଦର୍ଶଗତ ମତଭେଦ କଥା ଆଲୋଚନା କରିଥିଲେ ଏବଂ ଆଦର୍ଶଗତ ମତଭେଦ ଥାଇ କୌଣସି କନ୍‌ଫେଡ଼େରେସନ୍ ଗଠନ ସମ୍ଭାବନା ଉପରେ ସନ୍ଦେହ ପ୍ରକାଶ କରିଥିଲେ । ରଣଦିଭେ ତାଙ୍କ ସମାପ୍ତି ଭାଷଣରେ କହିଥିଲେ : "ଆଦର୍ଶଗତ କାରଣ କନ୍‌ଫେଡ଼େରେସନ୍ ଗଠନର ବାଧକ ନୁହେଁ । ସମସ୍ତେ ଯେଉଁ ନୀତି ଉପରେ ଏକମତ ହେବେ ଏହା ସାଧାରଣ

ନୀତି ଭାବେ ଗ୍ରହଣ ଯୋଗ୍ୟ ହୋଇ ପାରିବ ।” ସେ କହିଥିଲେ ଆର୍ନ୍ତଦେଶଗତ ବିଷୟକୁ କେନ୍ଦ୍ରିୟ ଟ୍ରେଡ଼ ୟୁନିୟନମାନେ ନିଜ ନିଜ ମଞ୍ଚରୁ ଆଲୋଚନା କରିପାରିବେ ।

ସି.ଆଇ.ଟି.ୟୁର ଲଗାତାର ଚେଷ୍ଟା ସତ୍ତ୍ୱେ କନ୍‌ଫେଡ଼େରେସନ ଗଠନ ସମ୍ଭବପର ହୋଇ ନାହିଁ । କେତେକ କେନ୍ଦ୍ରିୟ ଟ୍ରେଡ଼ ୟୁନିୟନ ପରସ୍ପର ଭିତରେ ମିଶିଯିବା ପାଇଁ ମତାମତ ପୋଷଣ କରିଥିଲେ । ଯାହାହେଉ ଏ.ଆଇ.ଟି.ୟୁ.ସି., ଏଚ୍.ଏମ୍.ଏସ୍ ଓ ଆଇ.ଏନ୍.ଟି.ୟୁ.ସି, ଏକ ଆରେକ ସହ ମିଶିବା ପ୍ରକ୍ରିୟା ଅସଫଳତା ଯୋଗୁ ଏହା ଅସମ୍ଭବ ପ୍ରମାଣିତ ହୋଇଛି । ତେଣୁ କନ୍‌ଫେଡ଼େରେସନ ଭିତ୍ତିକ ଏକ ସଂଗଠନ ଗଢ଼ି ଶେଷରେ ସମସ୍ତ ୟୁନିୟନ ଗୁଡ଼ିକର ମିଶ୍ରଣ ପାଇଁ ପଥ ଉନ୍ମୁକ୍ତ କରାଯାଇ ପାରିବ । ଏଣୁ ରଣଦିଭେ ପୁଞ୍ଜିବାଦର ଆକ୍ରମଣ ବିରୁଦ୍ଧରେ ଲଗାତର ଆନ୍ଦୋଳନ ଉପରେ ଗୁରୁତ୍ୱ ଦେଇଥିଲେ । ଏହି ବାଟରେ ଏକତା ପ୍ରତିଷ୍ଠା ପାଇଁ ପଥ ଉନ୍ମୁକ୍ତ ହୋଇ ପାରିବ ।

## ରାଷ୍ଟ୍ରାୟତ ଶିଳ୍ପ ସଂସ୍ଥା

ଭାରତବର୍ଷର ରାଷ୍ଟ୍ରାୟତ ଶିଳ୍ପ ସଂସ୍ଥାରେ କର୍ମରତ ଶ୍ରମିକମାନଙ୍କ ଗୁରୁତ୍ୱ ପ୍ରତି ବି.ଟି.ଆର ବାରମ୍ବାର ଧ୍ୟାନ ଆକର୍ଷଣ କରିଥିଲେ । ବିପ୍ଳବୀ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ପାଇଁ ସେ ଏହା ଏକାନ୍ତ ଅପରିହାର୍ଯ୍ୟ ମନେ କରିଥିଲେ । ରାଷ୍ଟ୍ରାୟତ ଶିଳ୍ପ ଉପରେ ହିଁ ଭାରତବର୍ଷର ସ୍ୱାଧୀନ ଅର୍ଥନୈତିକ ଅଗ୍ରଗତି ନିର୍ଭର କରୁଥିବା ବିଚାର କରିଥିଲେ ।

“ଭାରତବର୍ଷର ରାଷ୍ଟ୍ରାୟତ୍ତ ଶିଳ୍ପ ମାନେ ନିଃସନ୍ଦେହ ଭାବେ ପୁଞ୍ଜିବାଦୀ ବିକାଶର ଅଂଶ ବିଶେଷ ଅଟନ୍ତି; କିନ୍ତୁ ଏଥି ସହ ଏ ଗୁଡ଼ିକ ସାମ୍ରାଜ୍ୟବାଦୀ ଅନୁପ୍ରବେଶକୁ ବାଧା ଦେଇଥାନ୍ତି ଏବଂ ସ୍ୱାଧୀନ ଅର୍ଥବ୍ୟବସ୍ଥାର ପ୍ରହରୀ ଭଳି କାମ କରନ୍ତି । ଏତଦ୍‌ବ୍ୟତିତ, ଭାରତବର୍ଷ ପରି ଦେଶରେ ଗୁରୁତ୍ୱପୂର୍ଣ୍ଣ ଶିଳ୍ପର ପ୍ରତି କ୍ଷେତ୍ରକୁ ରାଷ୍ଟ୍ରାୟତ ସଂସ୍ଥା ସମ୍ପ୍ରସାରିତ ନହେଲେ ରାଷ୍ଟ୍ରିୟ ଯୋଜନା ସଫଳ ହେବ ନାହିଁ; ଘରୋଇ କ୍ଷେତ୍ର ଉପରେ ଅଂକୁଶ ରହିବ ନାହିଁ ଓ ସେମାନଙ୍କ ଦ୍ୱାରା ଅର୍ଥନୈତିକ ହାତ-ସଫେଇ ସମ୍ଭବପର ହେବ ନାହିଁ ।”

ଭାରତବ୍ରର୍ଷପରି ବିକାସଶୀଳ ଦେଶରେ ତଡ଼ିତ ଅଗ୍ରଗତି ଘଟେଇବା କ୍ଷେତ୍ରରେ ପୁଞ୍ଜିବାଦର ବିଶେଷ ଭୂମିକା ରହିଛି । ତେଣୁ ସେ କହିଥିଲେ :

“ଦୀର୍ଘକାଳ ଯାଏ ଭାରତବର୍ଷ ଉପନିବେଶବାଦୀମାନଙ୍କ ଦଖଲରେ ରହିଲା । ଏହାର ଶିଳ୍ପ ବିକାଶକୁ ସାମ୍ରାଜ୍ୟବାଦୀ ମାନେ ପଛୁଆ କରି ରଖିଲେ । ଗୁରୁତ୍ୱପୂର୍ଣ୍ଣ ଗୁରୁଶିଳ୍ପ ତଥା ବେସିକ୍ ଶିଳ୍ପ ପ୍ରତିଷ୍ଠା କଲେ ନାହିଁ । ଦେଶକୁ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କ କଞ୍ଚାମାଲ ଯୋଗାଣ ଦେଶ ବନେଇ ରଖିଲେ । ତେଣୁ ଆରମ୍ଭରେ (ସ୍ୱାଧିନତା ପରେ) ଶିଳ୍ପ ବିକାଶ ପାଇଁ ଏମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳତାକୁ ପରିତ୍ୟାଗ କରିବାକୁ ପଡ଼ିଥିଲା । ଦେଶୀୟ ପୁଞ୍ଜିପତିମାନଙ୍କ ପାଖରେ ଶିଳ୍ପ ବିକାଶ ଘଟେଇବା କ୍ଷମତା ନଥିଲା, ତେଣୁ ଏ ଦାୟିତ୍ୱ ରାଷ୍ଟ୍ର ବହନ କରିଥିଲା ।”

ବି.ଟି.ଆର କିନ୍ତୁ ଏହା ସତ୍ତ୍ୱେ ରାଷ୍ଟ୍ରାୟତ ସଂସ୍ଥାର ସୀମାବଦ୍ଧତା ସମ୍ପର୍କରେ ସଚେତନ ଥିଲେ । ରାଷ୍ଟ୍ରାୟତ ସଂସ୍ଥା ଗୁଡ଼ିକରେ "ପରିଚାଳକ ମାନଙ୍କ ଚରମ କୁପରିଚାଳନା" ପ୍ରତି ସେ ସଚେତନ ଥିଲେ । ରାଷ୍ଟ୍ରିୟ ଅର୍ଥବ୍ୟବସ୍ଥାରେ ରାଷ୍ଟ୍ରାୟତ ସଂସ୍ଥା ଗୁଡ଼ିକର ସାପେକ୍ଷ ଭୂମିକା ସପକ୍ଷରେ ଟ୍ରେଡ଼ ୟୁନିୟନ ମାନଙ୍କୁ ପରିଚାଳକମାନଙ୍କ ଅନ୍ତର୍ଘାତୀ କାମ ବିରୁଦ୍ଧରେ ଆନ୍ଦୋଳନ କରିବା ପାଇଁ ଡାକରା ଦେଇଥିଲେ । ସେ କହିଥିଲେ : "ରାଷ୍ଟ୍ରାୟତ ସଂସ୍ଥାମାନଙ୍କୁ ଘରୋଇ ପୁଞ୍ଜି ସେବାରେ ଘଟେଇ ଏବଂ ଦୁର୍ନିତୀଗ୍ରସ୍ଥ ପରିଚାଳନା ଏହାକୁ କ୍ଷତିଗ୍ରସ୍ତ କରି, ସରକାର ଜନସାଧାରଣଙ୍କ ମାଲିକାନାକୁ ଭଲଭାବେ ବଦନାମ କରିଛନ୍ତି । ଏବେ ସେଇ ସରକାର ରାଷ୍ଟ୍ରାୟତ ଶିଳ୍ପର ବଦନାମ କରୁଛନ୍ତି କାରଣ କୁପରିଚାଳନା ଯୋଗୁ ଏହା କ୍ଷତିଗ୍ରସ୍ତ ହେଲା । ଏତିକିବେଳେ ଘରୋଇ ପୁଞ୍ଜିପତିମାନେ ମଧ୍ୟ ରାଷ୍ଟ୍ରାୟତ ସଂସ୍ଥା ଗୁଡ଼ିକୁ ନିନ୍ଦା କରିବା ଆରମ୍ଭ କରିଛନ୍ତି; ସେମାନଙ୍କ ଉଦ୍ଦେଶ୍ୟ ହେଉଛି ଯେତେଶୀଘ୍ର ସେଗୁଡ଼ିକର ଘରୋଇକରଣ ଘଟିବ ଏବଂ ଜନଗଣଙ୍କ ମେହନତ ଓ ରକ୍ତରେ ପ୍ରତିଷ୍ଠିତ ବିଶାଳ ଉତ୍ପାଦନ ଶକ୍ତିକୁ ସେମାନେ ଅଚିରେ ଅକ୍ତିଆର କରିନେବେ ।"

ରାଷ୍ଟ୍ରାୟତ୍ତ ଶିଳ୍ପର ଶ୍ରମିକ ମାନଙ୍କ ଅପାରଗତାକୁ ନେଇ କୁତ୍ସାପ୍ରଚାର ବିରୁଦ୍ଧରେ ବି.ଟି.ଆର. ବାରମ୍ବାର ଜବାବ ଦେଇଥିଲେ । କିନ୍ତୁ ଏଥି ସାଙ୍ଗରେ ସେ ଦେଶର ବିକାଶ ପାଇଁ ରାଷ୍ଟ୍ରାୟତ ଶିଳ୍ପର ଭୂମିକାକୁ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ସଠିକ୍‌ଭାବେ ବୁଝି ନଥିବା ଯୋଗୁ ସମାଲୋଚନା କରିଥିଲେ । ସେ ଲେଖିଥିଲେ – "ଆମ ଦେଶର ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଦେଶର ସ୍ୱାଧୀନ ଆର୍ଥିକ ଅଗ୍ରଗତି ପାଇଁ ରାଷ୍ଟ୍ରାୟତ ସଂସ୍ଥାର ଉତ୍ତମ ପରିଚାଳନା ଗୁରୁତ୍ୱ ବୁଝିବାରେ ବିଳମ୍ବ କରିଛି, ଏହା ନିସନ୍ଦେହ ଭାବେ କୁହାଯାଇ ପାରିବ । ଏହା ସାଙ୍ଗେ ସାଙ୍ଗେ ଘରୋଇ କ୍ଷେତ୍ରକୁ ମଧ୍ୟ ନିୟନ୍ତ୍ରଣରେ ରଖାଯାଇ ପାରିଥାନ୍ତା । କିନ୍ତୁ ଟ୍ରେଡ଼ ୟୁନିୟନ ଆନ୍ଦୋଳନରେ ଅର୍ଥନୀତିବାଦର ପ୍ରାବଲ୍ୟ ଯୋଗୁ ଆମ ଦେଶର ଅର୍ଥ ବ୍ୟବସ୍ଥାରେ ରାଷ୍ଟ୍ରାୟତ ଶିଳ୍ପର ଗୁରୁତ୍ୱ ପ୍ରତି ଆଖି ବୁଜି ଦିଆଯାଇଛି ।"

ତେଣୁ ବି.ଟି.ଆର ସଂକ୍ଷିପ୍ତରେ ଟ୍ରେଡ଼ ୟୁନିୟନ ଆନ୍ଦୋଳନର କର୍ତ୍ତବ୍ୟ ଆଡ଼େ ଧ୍ୟାନ ଆକର୍ଷଣ କରାଇଥିଲେ : "ରାଷ୍ଟ୍ରାୟତ ଶିଳ୍ପକୁ ଭାଙ୍ଗିବା ଭଳି ରାଷ୍ଟ୍ର ବିରୋଧୀ କାମର ବିଚାର ଦୃଷ୍ଟିରୁ, ସି.ଆଇ.ଟି.ୟୁ. ଓ ସମଗ୍ର ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଏହାର ତୀବ୍ର ବିରୋଧ କରିବା ଦରକାର ଏବଂ ଶ୍ରମିକ ଶ୍ରେଣୀ ସମେତ ସକଳ ଜନସାଧାରଣଙ୍କୁ ଏହା ବିରୁଦ୍ଧରେ ଜାଗ୍ରତ କରିବା ଦରକାର । ସମଗ୍ର ଟ୍ରେଡ଼ ୟୁନିୟନ ଆନ୍ଦୋଳନ ବିଶ୍ୱ ବ୍ୟାଙ୍କ ଚାପଯୋଗୁ ସରକାର ଗ୍ରହଣ କରୁଥିବା ନୀତିକୁ ପ୍ରତ୍ୟାହାର କରିବା ପାଇଁ ଚାପ ପକେଇବା ଦରକାର ।"

## ପରିଚାଳନାରେ ଶ୍ରମିକମାନଙ୍କ ଅଂଶ ଗ୍ରହଣ

"ପରିଚାଳନାରେ ଅଂଶଗ୍ରହଣ; ନୀତିଗତ ନିଷ୍ପତ୍ତିରେ ଅଂଶିଦାର ପାଲଟିବା ସ୍ୱେଚ୍ଛାଚାରୀ ପରିଚାଳନା ତଥା ଉପର ସ୍ତରରେ ଅଳ୍ପ କେତେଜଣଙ୍କ ହାତରେ ସମସ୍ତ କ୍ଷମତା ଠୁଳ ହେବା

ବିରୁଦ୍ଧରେ, କ୍ରମେ ବିକଳ୍ପ ବ୍ୟବସ୍ଥାଭାବେ ସ୍ୱୀକୃତି ଲାଭ କରୁଛି ।" ଏ ଶବ୍ଦ ଗୁଡ଼ିକ ଜଗତିକରଣ ପ୍ରକ୍ରୀୟାର ଭକ୍ତି ପାଲଟିବା ପୂର୍ବରୁ ମନମୋହନ ସିଂ କହିଥିଲେ । ସେତେବେଳେ ଭାରତବର୍ଷ ରିଜର୍ଭ ବ୍ୟାଙ୍କର ସେ ଗଭର୍ଣ୍ଣର ଥିଲେ ଏବଂ ୧୯୮୩ ମସିହାରେ ଜାତୀୟ ଉତ୍ପାଦିକା କାଉନସିଲ ବୈଠକରେ ସେ ଏକଥା କହିଥିଲେ ୧୯୮୦ ସାଲରେ ବି.ଟି. ରଣଦିଭେ ଏ ଉକ୍ତିକୁ ସମ୍ପୂର୍ଣ୍ଣଭାବେ ଉଦ୍ଧାର କରି ଜାମସେଦପୁର ଠାରେ ଅନୁଷ୍ଠିତ ସି.ଆଇ.ଟି.ୟୁ. ୱାର୍କିଂ କମିଟି ବୈଠକରେ କହିଲେ : "ସି.ଆଇ.ଟି.ୟୁ ବାରମ୍ବାର ଶ୍ରମିକ ଓ ପରିଚାଳନା କର୍ତ୍ତୃପକ୍ଷଙ୍କ ମଧ୍ୟରେ ସମାନ ସମାନ ଉତ୍ତରଦାୟିତ୍ୱ କଥା ଶିଳ୍ପପରିଚାଳନାରେ କାର୍ଯ୍ୟକାରୀ କରିବା ପାଇଁ କହି ଆସିଛି । କିନ୍ତୁ ସରକାର ଓ ଘରୋଇ ସେକ୍ଟରଙ୍କ ପାଇଁ ଏକଥା କେବଳ ପ୍ରାର୍ଥନା ସଂଗିତ ରେ ସୀମିତ ରହିଛି ।"

ବି.ଟି. ରଣଦିଭେ ସରକାରଙ୍କ ପକ୍ଷରୁ କାର୍ଯ୍ୟକାରୀ କରାଯାଉଥିବା ପରିଚାଳନାରେ ଶ୍ରମିକମାନଙ୍କ ଜାଲିଆତି ଅଂଶ ଗ୍ରହଣର ଘୋର ବିରୋଧି ଥିଲେ । ଏହା ପ୍ରକୃତରେ ଶ୍ରମିକମାନଙ୍କ ହାତରେ କୌଣସି କ୍ଷମତା ଅର୍ପଣ କରେ ନାହିଁ ବରଂ ଏହା ଶ୍ରେଣୀ ସହଯୋଗୀତାର ହତିଆର ବନିଥାଏ । ୧୯୮୭ ମସିହାରେ ବମ୍ବେଠାରେ ଅନୁଷ୍ଠିତ ୬ଷ୍ଠ ସି.ଆଇ.ଟି.ୟୁ ସମ୍ମିଳନୀରେ ସେ କହିଥିଲେ : "ସି.ଆଇ.ଟି.ୟୁ ବାରମ୍ବାର ଉତ୍ପାଦନ କ୍ଷେତ୍ରରେ ଦାୟିତ୍ୱବହନ ପାଇଁ ଓ ଉତ୍ପାଦନ ପରିଚାଳନାରେ ଅଂଶ ଗ୍ରହଣ ପାଇଁ ଇଚ୍ଛା ପ୍ରକାଶ କରିଆସିଛି, କିନ୍ତୁ ଶ୍ରମିକମାନଙ୍କୁ ସମାନ ଅଂଶିଦାର କରିବା ଆବଶ୍ୟକ ଅଟେ । ମ୍ୟାନେଜମେଣ୍ଟର କଞ୍ଚାମାଲ କିଣିବା ଠାରୁ, ଅର୍ଥ ପରିଚାଳନା, ଧାର ଉଧାର ହିସାବ ପ୍ରଭୃତି ପ୍ରତ୍ୟେକ ବିଷୟ ଶ୍ରମିକମାନଙ୍କ ପାଖରେ ଉପସ୍ଥାପନ ହେବା ଦରକାର । କିନ୍ତୁ ସରକାର ଓ ମ୍ୟାନେଜମେଣ୍ଟ ପକ୍ଷରୁ ଏହା ଗ୍ରହଣ କରାଯାଇ ନାହିଁ । ଅନ୍ୟପକ୍ଷରେ ସରକାର ପରିଚାଳନାରେ ଅଂଶ ଗ୍ରହଣକୁ ନେଇ ଜାଲିଆତିପୂର୍ଣ୍ଣ ସ୍କିମ୍ ଚଳାଉଛନ୍ତି, ତେଣୁ ସି.ଆଇ.ଟି.ୟୁ ଏପରି ଅଂଶ ଗ୍ରହଣକୁ ପ୍ରତ୍ୟାଖ୍ୟାନ କରିଛି ।"

ଭି.ପି.ସିଂ ସରକାର ଅମଳରେ ପରିଚାଳନାରେ ଅଂଶ ଗ୍ରହଣକୁ ନେଇ ଏକ ବିଲ୍ ଅଣାଯାଇଥିଲା, ସେଥିରେ ବୋର୍ଡ଼ ସ୍ତର ପର୍ଯ୍ୟନ୍ତ ଶ୍ରମିକ ଅଂଶ ଗ୍ରହଣ ସ୍ୱୀକୃତ ଥିଲା କିନ୍ତୁ ଏହି ପ୍ରତିନିଧିତ୍ୱ କ୍ଷେତ୍ରରେ ସମାନ ଅଂଶ ଗ୍ରହଣକୁ ସ୍ୱୀକାର କରାଯାଇନଥିଲା । ରଣଦିଭେଙ୍କ କହିବା ଅନୁସାରେ ସମାନ ଅଂଶ ଗ୍ରହଣକୁ ସ୍ୱୀକାର ନକଲେ ଏପରି ସ୍କିମ୍‌ର କୌଣସି ଅର୍ଥ ରହିବ ନାହିଁ । କିନ୍ତୁ ମ୍ୟାନେଜମେଣ୍ଟ ପକ୍ଷରୁ ସମାନ ପ୍ରତିନିଧିତ୍ୱ ଅସ୍ୱୀକାର କରାଗଲା । ଏଥିରୁ ସେମାନଙ୍କର ଆନ୍ତରିକତା କେତେ ଜଣା ପଡ଼ିଥିଲା । ବି.ଟି. ରଣଦିଭେ କହିଥିଲେ ଯେ ଟ୍ରେଡ଼ ୟୁନିୟନ ଆନ୍ଦୋଳନର ଅନ୍ତିମ ଲକ୍ଷ ହେଉଛି ଶିଳ୍ପ ଉପରେ ଶ୍ରମିକମାନଙ୍କ ନିୟନ୍ତ୍ରଣ ପ୍ରତିଷ୍ଠିତ କରିବା । ପରିଚାଳନାରେ ଅଂଶ ଗ୍ରହଣକୁ ସେ ଏହି ଲକ୍ଷ୍ୟରେ ପରିଚାଳିତ ହେବା ଚାହିଁଥିଲେ ।

ଜଗତିକରଣ ପ୍ରକ୍ରୀୟା ଆରମ୍ଭ ହେବାପରେ ମାଲିକମାନେ ପରିଚାଳନାରେ ଶ୍ରମିକ ଅଂଶ ଗ୍ରହଣକୁ ବିରୋଧ କରୁଛନ୍ତି । ଉଦାରୀକରଣ ନୀତି ଭିତରେ ଶ୍ରମିକ ଅଂଶ ଗ୍ରହଣ ପ୍ରଶ୍ନ ଉଠୁନାହିଁ ।

ଯେଉଁଠି ମନଇଚ୍ଛା ଶ୍ରମିକଙ୍କୁ ଖଟେଇବା ଓ ନିକାଲି ବାହାର କରିବା ହେଉଛି ଉଦାରିକରଣ ନୀତି, ସେଠାରେ ପରିଚାଳନାରେ ଶ୍ରମିକର ଅଂଶ ଗ୍ରହଣ ପ୍ରଶ୍ନ ଉଠୁନାହିଁ ।



ସାରା ଦେଶରେ ଶ୍ରମିକ ଶ୍ରେଣୀ କମ୍ରେଡ଼ ବି.ଟି. ରଣଦିଭେଙ୍କ ଜନ୍ମ ଶତବାର୍ଷିକ ବର୍ଷ ସାରା ପାଳନ କରୁଛି । ବିଭିନ୍ନ ସଭା, ସେମିନାର ସମେତ ବି.ଟି. ରଣଦିଭେଙ୍କ ଲେଖା ପ୍ରକାଶ ଏହି ଜନ୍ମ ଶତବାର୍ଷିକ ପାଳନର ଅଂଶ ବିଶେଷ ଅଟେ । ଭାରତବର୍ଷରେ ଶ୍ରମିକ ଶ୍ରେଣୀ ଆନ୍ଦୋଳନର ବିଭିନ୍ନ ଦୁର୍ବଳତା ସତ୍ତ୍ୱେ ଏହା ଦଶନ୍ଧି ପରେ ଦଶନ୍ଧି ଧରି ବିକାଶ ପ୍ରକ୍ରିୟା ଭିତରେ ଦେଇ ଆଗକୁ ଆଗେଇଛି । ଶ୍ରମିକ ଆନ୍ଦୋଳନର ଅଧିକାର ଓ ନ୍ୟାର୍ଯ୍ୟ ଦାବି ଦୁବା ସଂଗ୍ରାମରେ ଶ୍ରମିକଶ୍ରେଣୀ ଆନ୍ଦୋଳନ ବ୍ୟାପକ ଭିତ୍ତିରେ ଏକଜୁଟ ହେଉଛି । ଏହି ପ୍ରକ୍ରିୟାର ମୁଖ୍ୟ ନିର୍ମାଣକର୍ତ୍ତା ଥିଲେ ବି.ଟି. ରଣଦିଭେ । ସେ ଲଗାତର ଭାବେ ବିଭିନ୍ନ ସଂଶୋଧନବାଦୀ ଝୁଁକ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଦୁଇ ଦଶନ୍ଧି ବ୍ୟାପୀ ସମୟ ଧରି ଟ୍ରେଡ଼ ୟୁନିୟନ ଆନ୍ଦୋଳନକୁ ଅତ୍ୟନ୍ତ ଯତ୍ନଶୀଳ ଭାବେ ପ୍ରତି ପଦେ ପଦେ ବାଟ ଦେଖେଇ ଥିଲେ । ସି.ଆଇ.ଟି.ୟୁ ତାଙ୍କ ନେତୃତ୍ୱରେ ହିଁ ପ୍ରତିଷ୍ଠିତ ହୋଇଥିଲା । ଭାରତବର୍ଷର ଟ୍ରେଡ଼ ୟୁନିୟନ ଆନ୍ଦୋଳନ କ୍ଷେତ୍ରରେ ସେ ଅଲିଭା ଛାପ ଛାଡ଼ି ଯାଇଛନ୍ତି । ତାଙ୍କ ଶିକ୍ଷାକୁ ମନେ ପକେଇବା ବେଳେ ଶ୍ରମିକ ଶ୍ରେଣୀ ଏହା କାର୍ଯ୍ୟକାରୀ କରିବା ପାଇଁ ଶପଥ ଗ୍ରହଣ କରୁ, ତେବେ ଯାଇଁ ଶ୍ରମିକ ଶ୍ରେଣୀ ଓ ନିପୀଡ଼ିତ ମଣିଷମାନଙ୍କ ମୁକ୍ତି ପାଇଁ ଉର୍ତ୍ସଗୀକୃତ ତାଙ୍କ ଜୀବନ ଅନୁକରଣୀୟ ହେବ ।

ଶ୍ରମିକଶ୍ରେଣୀ ମଧ୍ୟରେ ବି.ଟି. ରଣଦିଭେଙ୍କ ଶିକ୍ଷା ଜନ୍ମ ଶତବାର୍ଷିକ ପାଳନ ପରେ ମଧ୍ୟ ଅବ୍ୟାହତ ରହିବ । ତାଙ୍କ ବାର୍ତ୍ତା ଶ୍ରମିକ ଶ୍ରେଣୀକୁ ଜନଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତିଷ୍ଠା କରିଆରେ ସମାଜବାଦୀ ସମାଜ ନିର୍ମାଣ ଓ କମ୍ୟୁନିଜମ୍ ଆଡ଼େ ବାଟ କଢ଼େଇବାପାଇଁ ଅନବରତ ଦିଗ୍ ନିର୍ଦ୍ଦେଶ ଦେବ !

କମ୍ରେଡ଼ ବି.ଟି. ରଣଦିଭେଙ୍କ ଉନ୍ନତ ପରମ୍ପରା ଦୀର୍ଘଜୀବୀ ହେଉ !



***M. Basavapunnaiah, a member of the Poilt Bureau of the CPI(M) pays rich tributes to BTR :***

"BTR was a talented thinker and a mature scholar. For full 62 years, he gave his utmost to the service of the people as a staunch believer and dogged defender of the immortal Marxist doctrine, undeterred by the recurring obstacles and difficulties that he had to confront and overcome. He was not simply one of the tallest Marxists in India. I consider his as one of the few eminent and noted World Communist leaders of his generation...

"BTR's name will remain immortal in the annuals of the Indian Communist Movement. His unique contribution to the formation and growth of the CPI(M) in the year 1966-90, constitute a subject for instruction and emulation by our future generations..."

***M. Basavapunnaia***
***"People's Democracy," 31.03.1991***

Printed and Published by United Minies Mazdoor Union (C.I.T.U.),
At : Toda, P.O. : Kalta, Dist : Sundargarh, Orissa
& Printed at : Mayur Offset Printers, D1/1, Mancheswar Industrial Estate
Bhubaneswar - 751 010
**Price : 10.00**